# ସମର୍ପଣ

**ହେ କବିଚନ୍ଦ୍ର,**

ଆପଣଙ୍କର ୭୩ ତମ ଜନ୍ମ ଦିବସରେ ଆପଣଙ୍କୁ କଅଣ ଭେଟିବି ବୋଲି ଭାବିଲାବେଳେ ହଠାତ୍ ଗୋଟିଏ ପୁରୁଣା ସ୍ୱପ୍ନ ମନରେ ଜାଗି ଉଠିଲା । ଆପଣ ଜାଣନ୍ତି ଆପଣଙ୍କ ଆଶୈଶବ ଅଜ୍ଞାତ ବିଷୟରେ ମୁଁ କଥା ପ୍ରସଙ୍ଗରେ ବହୁ ବିଷୟ ଜାଣିବାକୁ ଇଚ୍ଛା କରିଥାଏଁ । ସେଗୁଡ଼ିକ ପ୍ରାପ୍ୟ ନହେଲାବେଳେ ଆପଣଙ୍କଠୁଁ ଅଳ୍ପ ଅଳ୍ପ ସଂଗ୍ରହ କରେ । କେଜାଣି କାହିଁକି ସେଗୁଡ଼ିକ ଏଠି ସେଠି ଟିପି ରଖୁଥିଲି । ଏହି ଅବସରରେ ହଠାତ୍ ଯୋଡ଼ାଯୋଡ଼ିକରି ଲେଖିବାକୁ ଆରମ୍ଭ କଲାପରେ ଲେଖାଟି ପସନ୍ଦ ନ ହେବାରୁ ସେ ପ୍ରୟାସରୁ ନିରସ୍ତ ହେବାକୁ ଚେଷ୍ଟା କଲି; କିନ୍ତୁ ମନ ବୁଝିଲାନି । ଲେଖାଟି ଯେଭଳି ହେଉ ପଛକେ ଗୋଟିଏ ନୂଆ ପ୍ରଚେଷ୍ଟା ରୂପେ ସବୁରି ଆଗରେ ଥୋଇ ଦେବାର ଲୋଭ ସମ୍ଭାଳି ପାରିଲିନି ।

ଆପଣଙ୍କ ଜୀବନର କୃତି ଅନେକ । ଆପଣ ଏ ଜାତିକୁ ଅନେକ କିଛି ନୂଆ, ପୁରୁଣା କଥା ଆପଣଙ୍କ ନିଜ ଢଙ୍ଗରେ ବାଢ଼ିଛନ୍ତି । ସେସବୁର ସମୀକ୍ଷା କରିବା ମୋଭଳି ଜଣେ ଅକିଞ୍ଚନ ପକ୍ଷରେ ଧୃଷ୍ଟତା ମାତ୍ର । ଗୋଟି-ପୁଅ ନାଚର ପ୍ରଯୋଜନାରୁ କାର୍ଯ୍ୟ ଆରମ୍ଭ କରି ଭାରତର ସଙ୍ଗୀତ ନାଟକ ଏକାଡେମୀର ରତ୍ନ-ସଦସ୍ୟ (Fellow) ରୂପେ ପ୍ରତିଷ୍ଠିତ ହୋଇ ପାରିଛନ୍ତି ଆପଣ; ଓଡ଼ିଶାର ରଙ୍ଗମଞ୍ଚ କ୍ଷେତ୍ରରେ ଅଧୁନା ପ୍ରଚଳିତ Cover-Discover ସିନ୍ ବ୍ୟବସ୍ଥାର ପ୍ରଥମ ପ୍ରବର୍ତ୍ତନ ଆପଣ କରିଛନ୍ତି; ଓଡ଼ିଶାର ରଙ୍ଗମଞ୍ଚରେ ନାରୀ-ପୁରୁଷ ଏକତ୍ର ହୋଇ ଯଥୋପଯୋଗୀ ଭୂମିକାରେ ଅଂଶ ଗ୍ରହଣ କରିବାର ସର୍ବଶେଷ ପ୍ରଚଳନ ଆପଣଙ୍କ ଠାରୁ; ଓଡ଼ିଆ ନାଟକକୁ ଏକାଦିକ୍ରମେ ଶତାଧିକ ରଜନୀ ଭରପୁର ରଙ୍ଗମଞ୍ଚରେ ପରିବେଷଣ କରି ପାରିଛନ୍ତି ଆପଣ; ଓଡ଼ିଆ ନାଟ୍ୟ ସାହିତ୍ୟରେ ଅପୂର୍ତ୍ତି ଅମିତ୍ରାକ୍ଷର ଛନ୍ଦର ପ୍ରଚଳନ ଆପଣଙ୍କ ଲେଖାରେ । ଓଡ଼ିଶୀ ନୃତ୍ୟର ମହତ୍ତ୍ୱକୁ କେବଳ ମହାଭାରତୀୟ କାହିଁକି, ସାରା ବିଶ୍ୱର ଦରବାରରେ ଚହ୍ଲାଇ ପାରିଛନ୍ତି ଆପଣ । ଓଡ଼ିଆ ପୁଅ ଜୟଦେବଙ୍କୁ ପଡ଼ୋଶୀଏ ଛଡ଼ାଇନେବାର ଯେଉଁ ସକ୍ଷମ ଅପଚେଷ୍ଟା ଏପର୍ଯ୍ୟନ୍ତ କରିଆସିଥିଲେ ତାହାଁର ବାଟ ବନ୍ଦ କରିବାରେ ମଧ୍ୟ ଅଗ୍ରଣୀ ଆପଣ ।

ରଙ୍ଗମଞ୍ଚ ମାଧ୍ୟମରେ ଜାତୀୟ-ଚେତନା ଉଦ୍ରେକ କରିବାରେ ଆପଣ କମ୍ ପ୍ରୟାସୀ ନୁହନ୍ତି । ଆପଣଙ୍କ ଖ୍ୟାତ ନାଟକକୁ ତଦାନୀନ୍ତନ ବ୍ରିଟିଶ୍-ସରକାରଙ୍କ କ୍ରୂରଦୃଷ୍ଟିରୁ ଦୂରେଇନେବା ନିମନ୍ତେ ଯଦି ସେତେବେଳେ "ମରଣର ଚିତା ମନ୍ଥନ କରି ଅକାଳ ମଡ଼ାଏ ଉଠରେ ଚେଇଁ" ଶୀର୍ଷକ ଗୀତଟି ବାଦ୍ ଯାଇ ନ ଥାନ୍ତା ତେବେ ଆଜି ବୋଧହୁଏ ଆପଣଙ୍କର ଉକ୍ତ ପ୍ରଚେଷ୍ଟା ଅଧିକ ସମୁଜ୍ଜ୍ୱଳ ହୋଇ ପାରିଥାନ୍ତା । କେବଳ ସେତିକି ନୁହେଁ; ଜୟଦେବ, ଜଗନ୍ନାଥ ଦାସ, ଶାରଳା ଦାସ ଆଦି ଜାତୀୟ କବିମାନଙ୍କର ଚରିତଗୁଡ଼ିକୁ ନାଟ୍ୟରୂପ ଦେଇ ପରଶିବା ଉଦ୍ୟମର ସମ୍ଭାବନା ଆପଣଙ୍କରହିଁ ସୃଷ୍ଟି । ମହାକବି କାଲୀଦାସ ଯେ ଓଡ଼ିଆ କୃଷ୍ଟିର ଅନୁପ୍ରାଣିତ ଏହା ଭବିଷ୍ୟତରେ ପ୍ରତିଷ୍ଠିତ କରିବାର ପ୍ରଥମ ଇଙ୍ଗିତ ମଧ ଆପଣଙ୍କଠୁ ମିଳିଛି ।

'ବେକାର' ନାଟକରେ ବିଖଣ୍ଡିତ ଓଡ଼ିଶାର ଏକ ବିଶିଷ୍ଟ ଚିତ୍ର ଦେଇ ଆପଣ ଓଡ଼ିଶାର ଅଙ୍ଗଚ୍ଛେଦ ଯେନ ଜାତୀୟ-ଚେତନା ଜଣାଇବା ସଙ୍ଗେ ସଙ୍ଗେ ନିଜକୁ ସମୟୋପଯୋଗୀ ସମସ୍ୟାରେ ଅଙ୍ଗାଙ୍ଗୀ କରିପାରିଛନ୍ତି ଏବଂ ଆପଣଙ୍କ 'ରକ୍ତମାଟି' ନାଟକରେ ଅର୍ଥଶୋଷକ ମାଲିକ ଓ ମଜଦୁରଙ୍କ ସମ୍ପର୍କରେ ସ୍ପଷ୍ଟ କେତେକ କଥା ଶୁଣାଇ ନିଜର ଅତ୍ୟାଧୁନିକ ଚେତନା-ବୋଧର ପରିଚୟ ଦେଇଛନ୍ତି ।

ଆପଣ 'ଫଁଟାଭୁଇଁ' ନାଟକ ରଚନାରେ ଏକ ନବୀନ ପ୍ରଚେଷ୍ଟା 'ଛାୟା ଦୃଶ୍ୟ' ଓ 'କାୟା ଦୃଶ୍ୟ'ର ପ୍ରଚଳନ କରି ତତ୍କାଳୀନ ସମସ୍ୟା ବିଭକ୍ତ-ଭାରତ ଓ ଗାନ୍ଧିଜୀଙ୍କ ବିୟୋଗ ଆଦି ପ୍ରସଙ୍ଗକୁ ଏକ 'ଯୁଗ ପୁରୁଷ' ମାଧ୍ୟମରେ ଯେଭଳି ଫୁଟାଇ ପାରିଛନ୍ତି, ଅବଶ୍ୟ ସେ ସ୍ତରର ନାଟକ ମଞ୍ଚସ୍ଥ ହୋଇଥିଲା ପରି ମନେ ହୁଏନା ।

ଆପଣଙ୍କ ସାହିତ୍ୟ ଓ କଳାକୃତି ଆପଣଙ୍କୁ ଉତ୍କଳ ସାହିତ୍ୟ-ସମାଜ ପକ୍ଷରୁ ନାଟ୍ୟାଚାର୍ଯ୍ୟ ପଦବୀ ଓ ଗଜପତି ମହାରାଜାଙ୍କ ତରଫରୁ କବିଚନ୍ଦ୍ର ଉପାଧି ସହ ଶ୍ରୀଜଗନ୍ନାଥଙ୍କ ଭ୍ରମର ସେବା ପ୍ରଦାନ କରିଅଛି ।

ଆପଣଙ୍କ ସଙ୍ଗୀତ ରଚନା ଅନବଦ୍ୟ । ରସଭାବ ବସ୍ତୁରରେ ସ୍ୱର, ତାଳ, ଛନ୍ଦ ଓ ମାତ୍ରା ଆଦି ଆଖି ଆଗରେ ରଖି ଶବ୍ଦ ଯୋଜନା ଆପଣଙ୍କ ସଙ୍ଗୀତ-ସୃଷ୍ଟିର ବିଶେଷତ୍ୱ । ଆପଣଙ୍କର ଶିଶୁ-ସାହିତ୍ୟ ରଚନା ଗୁଡ଼ିକ ପାଠ୍ୟ-ପୁସ୍ତକ ଜାତୀୟ-କରଣ ହେବା ପରେ ପରେ

ଲୋକ ଲୋଚନରୁ ଅପସରି ଯାଇଛନ୍ତି ସିନା; କିନ୍ତୁ ଯେଉଁମାନେ ନୂଆ-ପାଠ, ପିଲଙ୍କ-ପାଠ ପ୍ରମୁଖ ଶିଶୁ ସାହିତ୍ୟ ପୁସ୍ତକମାନଙ୍କରେ ଆପଣଙ୍କ ଶିଶୁ କବିତା ରଚନା କୁଶଳତାର ସମ୍ପର୍ଶରେ ଆସିଛନ୍ତି ସେମାନେ ସେଥିର ସବିଶେଷ ପ୍ରମାଣ ପାଇଛନ୍ତି ।

ସଙ୍ଗୀତ-ଶାସ୍ତ୍ରରେ ଆପଣଙ୍କ ଗଭୀର ପାଣ୍ଡିତ୍ୟର ପରିଚୟ ଦିଏ ଆପଣଙ୍କ ସପ୍ତସ୍ୱର, ମେଳ-ରାଗ-ଲକ୍ଷଣ ଓ ରାଗଚିତ୍ର ଆଦି ବହୁସଂଖ୍ୟକ ରଚନା ସମ୍ଭାର ।

ଜଣେ ସୁବକ୍ତା ଭାବରେ ମଧ୍ୟ ଆପଣ ସୁଖ୍ୟାତ । ଛୋଟ ଛୋଟ ବାକ୍ୟରେ ଖାଣ୍ଟି ଓଡ଼ିଆ ରୀତିମାନଙ୍କର ଯଥାଯୋଗ୍ୟ ବ୍ୟବହାର ଓ ନାଟକୀୟ ଭଙ୍ଗୀରେ ସେଗୁଡ଼ିକର ପରିପ୍ରକାଶ ଏକ ଆପଣଙ୍କର ବିଶେଷତ୍ୱ । ଆପଣଙ୍କ ବ୍ୟକ୍ତିଗତ ଜୀବନର ଧାରା ମଧ୍ୟ ବହୁ ବିଶେଷତ୍ୱବିମଣ୍ଡିତ ।

ଅଳ୍ପରେ କହିଲେ, ଆପଣଙ୍କ ପ୍ରତିଭା ବହୁମୁଖୀ । ପରବର୍ତ୍ତୀ କାଳରେ ଯେଉଁମାନେ ଆପଣଙ୍କର ବିସ୍ତୃତ ଜୀବନଚରିତ ଲେଖିବେ ସେମାନେ ଆପଣଙ୍କର ଗୁଣାବଳୀର ସବିଶେଷ ଚିତ୍ର ନିଶ୍ଚୟ ଅଧିକ ଉପଯୋଗୀ ଭାବରେ ବଖାଣି ପାରିବେ । ମୋର ଏହି କ୍ଷୁଦ୍ର ପ୍ରଚେଷ୍ଟା ସେମାନଙ୍କୁ ଯଦି ସେ ଦିଗରେ କିଛି ସହାୟତା କରିପାରିବ, ତେବେ ଆଜିର ଏ ଧୃଷ୍ଟତା ମାର୍ଜନୀୟ ହେବ ବୋଲି ବିଶ୍ୱାସ ରଖି ଆପଣଙ୍କଠାରୁ ସଂଗୃହିତ ଆପଣଙ୍କର ଘଟଣାବହୁଳ ଜୀବନର ଏ କ୍ଷୁଦ୍ର ଲେଖଟି ଆପଣଙ୍କ ହସ୍ତରେ ଅର୍ପଣ କରୁଛି । ତ୍ରୁଟି ମାର୍ଜନା କରି ବାଧିତ କରିବାହେବେ । ଇତି ।

କଟକ ।
ବଉଳ ଅମାବାସ୍ୟା
ତା ୧୭-୧୨-୭୧

ଆପଣଙ୍କର ଗୁଣମୁଗ୍ଧ
**ଗୋକୁଳଚନ୍ଦ୍ର କର**

# ଜନ୍ମ-ବୃତ୍ତାନ୍ତ

ସନ ୧୩୦୬ ସାଲ ଧନୁ (ପୌଷ) ମାସର ୧୦ ଦିନ; ଇଂରାଜୀ ୧୮୯୮ ମସିହା ଡିସେମ୍ବର ମାସ ୨୩ ତାରିଖ । ସେଦିନ ବଉଳ ଅମାବାସ୍ୟା ଗୁରୁବାର । ବଡ଼ମ୍ବା ଗଡ଼ର ବରିଷ୍ଠ ରାଜକର୍ମଚାରୀ ଶ୍ରୀଯୁକ୍ତ ନିମାଇଁ ଚରଣ ପଟ୍ଟନାୟକଙ୍କର ପୁତ୍ର ଶ୍ରୀଯୁକ୍ତ ଦୁର୍ଗାଚରଣ ପଟ୍ଟନାୟକଙ୍କର ଅନ୍ଧ ପୁଅଟିଏ ଜନ୍ମ ହେଲା । ଜନ୍ମବେଳରୁ ଆଖିରୁ ପୂଜ ଧାର ବୋହୁଥାଏ; ତାଳୁରେ ଗୋଟିଏ ଗର୍ତ୍ତ । ହେଲେ ପିଲାଟିର କଳା ମୁରୁମୁରୁ ସୁସ୍ଥ ସବଳ ଦେହଟି ଓ ଉଜ୍ଜ୍ୱଳ ମୁଖଶ୍ରୀ ଦେଖି ବାପା, ମାଆ, ଜେଜେ ଓ ଅନ୍ୟାନ୍ୟ ଆତ୍ମୀୟ ଲୋକେ ନିରାଶ ନ ହୋଇ ଇଷ୍ଟଦେବଙ୍କ ଉପରେ ଭରସା ରଖି ଜାତକ-କର୍ମ (ଏକୋଇଶିଆ) ଯଥାବିଧି ନବଡ଼ମ୍ବର ଭାବରେ ପାଳନ କଲେ । ଏହି ଜନ୍ମାନ୍ଧ ଶିଶୁଟି ଆଜି ସମସ୍ତଙ୍କ ପାଖରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ନାଟ୍ୟାଚାର୍ଯ୍ୟ, ଭାରତର ସଙ୍ଗୀତ ନାଟକ ଏକାଡେମୀର ରତ୍ନ ସଦସ୍ୟ ରୂପେ ସମ୍ମାନିତ ।

କାଳୀଚରଣଙ୍କ ପୂର୍ବପୁରୁଷମାନଙ୍କର ପ୍ରକୃତ ବାସସ୍ଥାନ କଟକ ଜିଲ୍ଲାର ବାଙ୍କୀ ମୁକାମରେ । ତାଙ୍କ ପିତାମହ ସ୍ୱର୍ଗତ ନିମାଇଁ ଚରଣ ପଟ୍ଟନାୟକ ପୂର୍ବତନ ଗଡ଼ଜାତ ବଡ଼ମ୍ବା ରାଜ୍ୟରେ ଗୃକସି କରୁଥିଲେ ଓ ରାଜାଙ୍କର ଅତ୍ୟନ୍ତ ପ୍ରିୟପାତ୍ର ଥିଲେ । ଏହି ଅବସରରେ ବଡ଼ମ୍ବା ଗଡ଼ଠାରେ ଘରଦ୍ୱାର କରି ଓ ଆଖପାଖ ଅଞ୍ଚଳରେ ଜମିବାଡ଼ି ନେଇ ସେଠାରେ ସପରିବାର ବାସ କରୁଥିଲେ । କାଳୀଚରଣଙ୍କର ପିତା ଦୁର୍ଗାଚରଣ ପ୍ରଥମେ କଟକଠାରେ ଓଡ଼ିଶା କମିସନରଙ୍କ ଅଫିସରେ ନାଜର କାର୍ଯ୍ୟ କରୁଥିଲେ । ସେତେବେଳେ ଓଡ଼ିଶାର ଗଡ଼ଜାତ ରାଜ୍ୟ-ଗୁଡ଼ିକର ଶାସନ କମିଶନରଙ୍କ ତତ୍ତ୍ୱାବଧାନରେ ରହୁଥିଲା । ଏହି ପରିପ୍ରେକ୍ଷୀରେ ଦୁର୍ଗାଚରଣ ବାବୁ କମିଶନରଙ୍କ ଦ୍ୱାରା କିଛିକାଳ ନିମନ୍ତେ ଆଠମଲ୍ଲିକ ରାଜ୍ୟରେ ଦେୱାନ୍ କାର୍ଯ୍ୟରେ ନିଯୁକ୍ତ ଥିଲେ;

କରୁ କାଳୀଚରଣଙ୍କ ଜନ୍ମବେଳକୁ ସେ ଆଠମଲ୍ଲିକ ରାଜ୍ୟରୁ ଚାକିରି ଛାଡ଼ି ଦେଇ ଚାଲିଆସି ତାଙ୍କ ପିତାଙ୍କ ନିକଟରେ ବଡ଼ମ୍ବା ଗଡ଼ରେ ସପରିବାର ବାସ କରୁଥିଲେ ।

କାଳୀଚରଣଙ୍କ ପିତାମହ ନିମାଇଁ ଚରଣ ଥିଲେ ଜଣେ ସୁଦକ୍ଷ ଓ ଧର୍ମପ୍ରାଣ ରାଜକର୍ମଚାରୀ । ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ତାଙ୍କର ବିଶେଷ ପାରଦର୍ଶିତା ଥିଲା । ତାଙ୍କର ସ୍ୱଦେଶ ପ୍ରୀତି ଓ ଉଲ୍ଲିଖିତ ବିଶିଷ୍ଟ ଗୁଣଗୁଡ଼ିକ ଯୋଗୁଁ ସେ କି ରାଜା, କି ପ୍ରଜା ସମସ୍ତଙ୍କର ସମ୍ମାନାସ୍ପଦ ଓ ପ୍ରିୟପାତ୍ର ହୋଇ ପାରିଥିଲେ । ତାଙ୍କର ପୁତ୍ର ଓ ଓ କାଳୀବାବୁଙ୍କ ପିତା ଦୁର୍ଗାଚରଣ ମଧ୍ୟ ପିତାଙ୍କର ପ୍ରଭାବରେ ଜଣେ ଲୋକପ୍ରିୟ ଓ ଧର୍ମପ୍ରାଣ ବ୍ୟକ୍ତି ହିସାବରେ ସୁପରିଚିତ । ତାଙ୍କର ଧର୍ମାନୁରାଗ ପିତାଙ୍କଠାରୁ ଅଧିକ ସ୍ପଷ୍ଟ ଥିଲା । ସେ ଜଣେ ଦେବୀପୂଜକ ଥିଲେ ଓ ନିୟମିତ ଭାବରେ ଚଣ୍ଡୀପାଠ ଇତ୍ୟାଦି କରୁଥିଲେ । କାଳୀଚରଣଙ୍କ ନାମକରଣ ଏସବୁର ପରିଚାୟକ ।

ଶିଶୁ କାଳୀଚରଣଙ୍କ ଜନ୍ମପରେ ତତ୍କାଳୀନ ବଡ଼ମ୍ବାର ଡାକ୍ତର ତାଙ୍କର ଚକ୍ଷୁଚିକିତ୍ସା ନିମନ୍ତେ ସକଳ ବ୍ୟବସ୍ଥା ପ୍ରୟୋଗ କରି ମଧ୍ୟ ବ୍ୟର୍ଥ ହେଲାରୁ ତାଙ୍କର ପିତା ଇଷ୍ଟଦେବତାଙ୍କର ଶରଣାଗତ ହେଲେ । ଦିନେ ନିର୍ଜଳା ଉପବାସ ଓ ଚଣ୍ଡୀପାଠ ପରେ କାନ୍ଦି କାନ୍ଦି ଦେବୀଙ୍କୁ ତାଙ୍କର ଦୁଃଖ ଜଣାଇଲେ ଏବଂ ସ୍ୱପ୍ନାଦେଶରୁ ପ୍ରାପ୍ତ 'ପାଷାଣଭେଦୀ' ନାମକ ଏକ ଉଦ୍ଭିଦକୁ ତେଲରେ ପକାଇ ସେହି ତେଲରେ ବୁଡ଼ା ହୋଇଥିବା କନାକୁ ଶିଶୁର ତାଳୁରେ ଦେବାରୁ ତାଳୁର ଛିଦ୍ରଟି ଲୁଚିଗଲା । ପରେ ପରେ ଆଖିରୁ ପୂଜଧାର ବନ୍ଦହୋଇ କ୍ରମେ କ୍ରମେ ଆଖି ଖୋଲିଗଲା । ଉକ୍ତ 'ପାଷାଣଭେଦୀ' ଗୁଳ୍ମର ଅବଶିଷ୍ଟାଂଶ ଗୋଟିଏ ତେଉଁରିଆରେ ପୂରାଇ ତାଙ୍କ ଗଳାରେ ଲମ୍ବାଇ ଦିଆଗଲା ଏବଂ ସେହି ପଦାର୍ଥଟିକୁ ଅତି ଯତ୍ନରେ ସାଇତି ରଖି ସେ ଏବେ ମଧ୍ୟ ତାହା ଗଳାରେ ଧାରଣ କରିଛନ୍ତି ।

## ବାଲ୍ୟ-ଜୀବନ

କିଛିଦିନରେ ଦୁର୍ଗାଚରଣ ବାବୁ ନରସିଂହପୁର ରାଜ୍ୟର ସିରସ୍ତାଦାର ରୂପେ ଚାକିରିରେ ଯୋଗଦେଲେ ଓ ନିଜର ପରିବାର ସେଠାକୁ ନେଇଗଲେ । ସେଠାରେ ଆମର ପୁରୁଣା ଚଳଣୀ ଅନୁଯାୟୀ

ବର୍ଷ ଗୁରୁମାସ ଗୁରୁବାରେ କାଳୀବାବୁଙ୍କ ବିଦ୍ୟାରମ୍ଭ ହେଲା । ନରସିଂହପୁର ସ୍ୱର୍ଗତ ପଣ୍ଡିତ ଆର୍ତ୍ତବନ୍ଧୁ ମିଶ୍ର ମହାଶୟ ତାଙ୍କର ଆଦ୍ୟଗୁରୁ । କିଛିକାଳପରେ ଦୁର୍ଗାଚରଣବାବୁ ଢେଙ୍କାନାଳକୁ ବଦଳି ହୋଇଯିବାରୁ କାଳୀଚରଣ ପିତାମହ ନମାଇଁ ଚରଣଙ୍କ ନିକଟକୁ ଫେରିଆସି ସ୍ଥାନୀୟ ମଧ୍ୟ ଭର୍ଣ୍ଣାକୁଲାର୍ ସ୍କୁଲରେ ପଢ଼ିଲେ । ଏହି ସମୟରେ ନମାଇଁବାବୁ ସଂସ୍କୃତ ଗ୍ରନ୍ଥ ଅମରକୋଷକୁ ଓଡ଼ିଆରେ ପଦ୍ୟାନୁବାଦ କରି ତାଙ୍କୁ ପଢ଼ାଇଥିଲେ ।

ବଡ଼ମ୍ବାର ତଦାନିନ୍ତନ ରାଜା ବିଶ୍ୱମ୍ଭର ମଙ୍ଗରାଜ ବଡ଼ କଳାପ୍ରେମୀ ଥିଲେ । ନୃତ୍ୟଗୀତକୁ ସେ ଅତ୍ୟନ୍ତ ଆଦର କରୁଥିଲେ । ସେତେବେଳେ ବଡ଼ମ୍ବାର ଚନ୍ଦନ ଯାତ୍ରା ଓ ରାମ-ନବମୀ ଉତ୍ସବ ଖୁବ ଆଡ଼ମ୍ବରରେ ପାଳିତ ହେଉଥିଲା । ସିଂହଦ୍ୱାର ଠାରେ ଏକ ଆସ୍ଥାୟୀ ରୁଲଘର ନିର୍ମିତ ହୋଇ ରାମଲୀଳା ନଅଦିନ କାଳ ସନ୍ଧ୍ୟାଠାରୁ ପ୍ରଦର୍ଶିତ ହେଉଥିଲା । ଚନ୍ଦନ-ଯାତ୍ରା ହେଉଥିଲା ଏକୋଇଶ ଦିନ ବ୍ୟାପି । ସଞ୍ଜବେଳୁ ବିଅଁ ମନ୍ଦିରଠାରୁ ବାହାରି ରାତି ପାହାନ୍ତା ଯାଏ ରାଜମାର୍ଗରେ ଧୀରେ ଧୀରେ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ରହିରହି ଯାଉଥିଲେ ଓ ଯାତ୍ରା ଶେଷକରି ମନ୍ଦିରକୁ ବାହୁଡ଼ି-ଥିଲେ । ଏହି ଯାତ୍ରାରେ ଦୂରଦୂରାନ୍ତରୁ ବହୁ ସଙ୍ଗୀତ, ଲୀଳା ସୁଆଙ୍ଗ ଓ ବାଈନାଚଦଳ ଆସି ଯୋଗ ଦେଉଥିଲେ । ବାଳକ କାଳୀଚରଣ ଏହି ସବୁ ଉତ୍ସବରେ ପୂରାପୂରି ମଜ୍ଜି ରହୁଥିଲେ ଓ ଉକ୍ତ ଉତ୍ସବମାନଙ୍କରେ ଆୟୋଜିତ ସଙ୍ଗୀତମାନ ବେଶ୍ ଉପଭୋଗ କରୁଥିଲେ ।

ଏହି ସମୟରେ ବଡ଼ମ୍ବାର ରାଜା ସାହେବ ନୂଆକରି ଗ୍ରାମୋଫୋନ୍‌ଟିଏ ଅଣାଇଲେ । ତା ସହିତ କେତେ ଖଣ୍ଡ ଓଡ଼ିଆ ରେକର୍ଡ଼ ଅଣାହୋଇ ଥାଏ । କଟକର ସୁଖ୍ୟାତ ଗାୟକ ୰ ଖାଜୁମିଆଁଙ୍କର ଖଣ୍ଡିଏ ରେକର୍ଡ଼ ଥାଏ । ରେକର୍ଡ଼ର ଗୋଟିଏ ପାଖର ଗୀତ ହେଲା—"ଆସୁଛନ୍ତି ବ୍ରଜବାସୀ ଧୀରେ ଧୀରେ ଗୁଲି ଗୁଲି" । ଆଉ ଖଣ୍ଡିଏ ରେକର୍ଡ଼ ଥାଏ ଖୋର୍ଦ୍ଧାର ପ୍ରସିଦ୍ଧ ଗାୟକ ୰ ବାସୁଦେବ ମହାପାତ୍ରଙ୍କର । ତହିଁରେ ଗୋଟିଏ ଗୀତ— "ରାଧାକାନ୍ତ ରାଧାମୋହନ ଗୋବିନ୍ଦ ଲଭେ ଦୟା ନାହିଁକି" ? ବାଳକ କାଳୀଚରଣ ଏ ଗୀତ ଦୁଇଟିକୁ ଶୁଣିଶୁଣି, ଶିଖି, ମନକୁମନ ଗୁଣୁ ଗୁଣୁ କରି ଅନେକ ସମୟରେ ଗାଆନ୍ତି । ଦିନେ ରାଜାଙ୍କର ଦେହହରଣ ମେଳାରେ ରାଜା ଆସିବା ପୂର୍ବରୁ କାଳୀଚରଣ ଏ ଗୀତ ଗାଉଥିଲେ । ରାଜା ଆସି

ଦ୍ୱାର ଦେଶରେ ରହି, ଗୀତ ଶୁଣି, ହସି ହସି ଭିତରକୁ ଆସିଲେ । କାଳୀଚରଣ ଗୀତ ଗାଇବା ବନ୍ଦକରି ତାଙ୍କୁ ପ୍ରଣାମ କଲେ । ରାଜା କାଳୀଚରଣଙ୍କ ହାତଧରି ଆଦରକରି କହିଲେ, "ପୁଅ, ଗାଅ, ଗାଅ; ମୁଁ ଆଉଥରେ ଶୁଣିବି ।" ଲଜ୍ଜାରେ କାଳୀଚରଣ ଝାଉଁଳି ପଡ଼ିଲେ । ରାଜା ପୁଣିଥରେ ତାଙ୍କୁ କହିବାରୁ ସେ ଦୁଇଟିଯାକ ଗୀତ ଗାଇ ଶୁଣାଇଲେ । ସେହିଦିନଠାରୁ କାଳୀଚରଣଙ୍କ ଗୀତ ଗାଇବା କଥା ଚାରିଆଡ଼େ ପ୍ରକଟ ହୋଇଗଲା । ରାଜା ତାଙ୍କୁ ଏ ବିଷୟରେ ବିଶେଷ ଭାବେ ଉତ୍ସାହିତ କଲେ ଓ ପ୍ରତି ସନ୍ଧ୍ୟାରେ ତାଙ୍କୁ ରାଜାଙ୍କ ନିକଟରେ ଗୀତ ଗାଇବାକୁ ପଡ଼ିଲା । ଏହିଠାରେ ଓ ଏହିପରି ଭାବରେ ହିଁ ବାଳକ କାଳୀଚରଣଙ୍କର ସଙ୍ଗୀତ ଶିକ୍ଷା ଓ ସଙ୍ଗୀତ ସାଧନାର ଅଯ୍ମାରମ୍ଭ ।

ଅଳ୍ପଦିନ ପରେ କାଳୀଚରଣ ବଡ଼ାମ୍ବାରୁ ପିତାଙ୍କ ନିକଟକୁ ଢେଙ୍କାନାଳ ଚାଲିଗଲେ ଓ ସେଠାରେ କିଛିଦିନ ପଢ଼ିଲା ପରେ ବାଙ୍କିକୁ ଆସି ଚର୍ଚ୍ଚିକା ମାଇନର ସ୍କୁଲରେ ଯୋଗଦେଲେ । ସେତେବେଳକୁ କାଳୀଚରଣଙ୍କ ବୟସ ପ୍ରାୟ ବାର ବର୍ଷହେବ । ଏହି ସମୟରେ ସ୍ଥାନୀୟ କଚେରୀର ଅମଲାମାନେ ଚର୍ଚ୍ଚିକା ମାଇନର ସ୍କୁଲର କଳା-ସଙ୍ଗୀତ-ପ୍ରେମୀ ପ୍ରଧାନ ଶିକ୍ଷକ ୰ ରଘୁନାଥ ରାୟଙ୍କ ସହାୟତାରେ କାଞ୍ଚି-କାବେରୀ ନାଟକ ଅଭିନୟ ପ୍ରଦର୍ଶନ କରିଥିଲେ । ଏଥିରୁ ପ୍ରେରଣା ପାଇ ବାଳକ କାଳୀଚରଣ କେତେ ଜଣ ସାଙ୍ଗ ପିଲାଙ୍କୁ ଧରି ତାଙ୍କ ଖଳା-ବାଡ଼ିରେ ଖଟ ଖଣ୍ଡିକେତେ ପକାଇ ସେହି ଷ୍ଟେଜ୍‌ରେ ବାବାଜି ନାଟକର ଅଭିନୟରେ ଲାଗିଗଲେ । ବିଛଣାଚଦର ଓ ସତରଞ୍ଜମାନ ସିଲାଇ ହୋଇ ସିନ୍ ହେଲା, ସରାମାନଙ୍କରେ ଜଡ଼ାତେଲରେ ସୋରିଷ ପୁଡ଼ା ରଖି ଆଲୁଅ ଜଳା ହେଲା । ସାହିର ସ୍ତ୍ରୀଲୋକମାନେ ହିଁ ଥିଲେ ମୁଖ୍ୟ ଦର୍ଶକ । ଅବଶ୍ୟ ପୁରୁଷ କେତେ ଜଣ ବି ଦର୍ଶକ ଭାବରେ ଯୋଗ ଦେଇଥିଲେ । କାଳୀଚରଣ ନିଜେ ବାବାଜି ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଏହି ଅଭିନୟର ସଫଳତା କ୍ରମେ ଲୋକ-ମୁଖରେ ପ୍ରଶଂସିତ ହେଲା ଓ କାଳୀଚରଣଙ୍କ କଳାପ୍ରିୟତା କ୍ରମେ କ୍ରମେ ପ୍ରସାରିତ ହେବାରେ ଲାଗିଲା । ପରେ ଉକ୍ତ ହେଡ଼ମାଷ୍ଟର ରଘୁନାଥ ବାବୁ ତାଙ୍କୁ ସେ ଦିଗରେ ଅଧିକ ଉତ୍ସାହିତ କଲେ ଓ ଅନ୍ୟ ସ୍କୁଲ ପିଲାମାନଙ୍କ ସହ-ଯୋଗରେ ବାଣ ଦର୍ପଦଳନ ଓ ସୀତା ବିବାହ ପ୍ରଭୃତି ନାଟକମାନ

ମଞ୍ଚସ୍ଥ କରାଇଲେ । ସୀତା ବିବାହରେ କାଳୀଚରଣ ନିଜେ ସାଜିଥିଲେ 'ସୀତା' ।

ସେତେବେଳକୁ କାଳୀଚରଣ ପଦେ ଅଧେ ଗୀତ ରଚନା କରିବା ଆରମ୍ଭ କରିଥାଆନ୍ତି । ଦିନେ ସେ ଗୋଟିଏ ଦେବୀ ଜଣାଣ ଲେଖି ତାଙ୍କ ବୋଉ ରାଧାମାଳୀଙ୍କୁ ଶୁଣାଇଲେ ଓ ଗୀତଟି କିପରି ହୋଇଛି ବୋଲି ପଚାରିଲେ । ରାଧାମାଳୀ ନିଜେ ବୈଦେହୀଶ ବିଳାସ, ବିଦଗ୍ଧ ଚିନ୍ତାମଣି ଇତ୍ୟାଦି ଗ୍ରନ୍ଥମାନ ବେଶ୍ ଗାଇ ପାରୁଥିଲେ ଓ ବୁଝାଇ ପାରୁଥିଲେ । ସେ କାଳୀଚରଣଙ୍କ ଗୀତଟି ଶୁଣି କହିଲେ—"ଗୀତଟି ଭଲ ହୋଇଛି କି ମନ୍ଦ ହୋଇଛି ମୁଁ କିପରି କହିବି ? ଯାହାଙ୍କ ଜଣାଣ ଲେଖିଛୁ ତାଙ୍କୁ ଯାଇ ଶୁଣା; ସେ ଯିନା ଭଲ ମନ୍ଦ କହିବେ" । ସେଦିନ ଗୁରୁବାର ହୋଇଥାଏ । ରାଧାମାଳୀ ବାଡ଼ରୁ ଗୋଟିଏ ଗୋଲାପ ଫୁଲ ତୋଳି ଚର୍ଚ୍ଚିକାଠାକୁରାଣୀଙ୍କ ପାଖକୁ ପଠାଇ ଦେଲେ । ପୂଜକ ସେଫୁଲଟି ଠାକୁରାଣୀଙ୍କ ଶିରରେ ଚଢ଼ାଇଲେ । ସଞ୍ଜବେଳକୁ କାଳୀଚରଣ ଠାକୁରାଣୀଙ୍କ ପାଖକୁ ଯାଇ ମୁଣ୍ଡିଆ ମାରି ସ୍ୱରଚିତ ସଙ୍ଗୀତଟି ଆଖି ମୁଦି ଉଚ୍ଚ କଣ୍ଠରେ ଗାଇଲେ ଓ ଗୀତ ଶେଷରେ ପୁଣି ଥରେ ମୁଣ୍ଡିଆ ମାରି ଘରକୁ ଫେରିଲେ । ଏହି ଗୀତଟିର ପ୍ରଥମ ଧାଡ଼ି କେତୋଟି ତଳେ ଦିଆଗଲା :—

> ଦେବୀ ଗୋ ପରମାନନ୍ଦ ଦାୟିନୀ,
> ପଦ୍ମଗନ୍ଧ-ପ୍ରସୂନ ମାଳିନୀ ମା ଶ୍ମଶାନ-ବିଳାସିନୀ···
> କର ଦୟା ଦୀନେ ସିଂହ ବାହିନୀ ହର୍-ହୃଦୟ-ପରଚାରିଣୀ ।

× × × ×

ଘରକୁ ଫେରିଲାରୁ ମାଆ ପଚାରିଲେ, "ଗୀତଟି ମାଆଙ୍କୁ ଶୁଣାଇଲୁ ; ସେ କଅଣ କହିଲେ ?" କାଳୀଚରଣ କହିଲେ, "ମାଆ କଅଣ ମୋତେ କଥା କହି ଥାଆନ୍ତେ ?" ଏତିକବେଳେ ମନ୍ଦିର ପୂଜକ ଖଣ୍ଡ ମହାପାତ୍ରେ ଗୋଟିଏ କଦଳୀପତ୍ର ପୁଡ଼ା ଆଣି ରାଧାମାଳୀଙ୍କୁ ବଢ଼ାଇ ଦେଇ କହିଲେ, "ସାନବାବୁ ଗୀତ ଗାଇସାରି ମୁଣ୍ଡିଆ ମାରିଲାବେଳେ ଏ ଫୁଲଟି ମାଆଙ୍କ ମଥାରୁ ଖସି ପଡ଼ିଲା । ମୁଁ ସେବାରେ ଥିଲି ; ବାହାରକୁ ଆସି ଖୋଜିଲାବେଳକୁ ବାବୁ ଚାଲି ଆସିଲେଣି । ସେ ଫୁଲଟି ପୁଡ଼ାରେ ଅଛି ; ନିଅନ୍ତୁ ।" ରାଧାମାଳୀଙ୍କ ଆଖି ଛଳଛଳ ହୋଇଗଲା । ସେ

କାଳୀଚରଣଙ୍କୁ କୋଳକୁ ଟାଣିଆଣି ମୁଣ୍ଡରେ ହାତ ବୁଲାଉ ବୁଲାଉ କହିଲେ, "ତୁ ଗୀତ ଲେଖ୍ ; ମାଆଙ୍କର ସେ ଗୀତ ମନକୁ ପାଇଛି" । ସେହି ଦିନରୁ କାଳୀଚରଣ ଗୀତ ରଚନା ପ୍ରତି ଅଧିକ ଧ୍ୟାନ ଦେଲେ । ସେ ଲେଖନ୍ତି, ହେଡ୍‌ମାଷ୍ଟର ରଘୁବାବୁଙ୍କୁ ଶୁଣାନ୍ତି । ରଘୁବାବୁ ସେଗୁଡ଼ିକୁ ଆବଶ୍ୟକ ସ୍ଥଳେ ସଂଶୋଧନ କରିଦିଅନ୍ତି । ସେହି ସମୟର ରଚିତ କେତୋଟି ଗୀତ ତାଙ୍କ ଗୀତାବଳୀର ପ୍ରଥମ ଖଣ୍ଡରେ ପ୍ରକାଶିତ ହୋଇଛି ।

ଚର୍ଚ୍ଚିକା ସ୍କୁଲରୁ ମାଇନର ପାଶ୍ କରି କାଳୀଚରଣ ତାଙ୍କ ଦାଦା (କକା)ଙ୍କ ତତ୍ତ୍ୱାବଧାନରେ ରହି ଖୋର୍ଦ୍ଧା ହାଇସ୍କୁଲରେ ଯୋଗ ଦେଲେ । ଖୋର୍ଦ୍ଧାର 'ନଉଆନାବାଗ' ସେତେବେଳେ ସ୍କୁଲ ପିଲା ଓ ସ୍ଥାନୀୟ ଭଦ୍ରଲୋକମାନଙ୍କର ସାନ୍ଧ୍ୟ ଭ୍ରମଣର ସ୍ଥାନ ଥିଲା । ଦିନେ କାଳୀଚରଣ ଏହିଠାରେ ଏକୁଟିଆ ବସି ଗୀତ ଗାଉଥିଲେ । ସ୍ଥାନୀୟ ଜମିଦାର ସ୍ୱର୍ଗତ ପ୍ରତାପଚନ୍ଦ୍ର ନାୟକ ସେହି ସମୟରେ ସେଠାକୁ ବୁଲି ଯାଇଥିଲେ । ସେ କାଳୀଚରଣଙ୍କ ଗୀତ ଶୁଣି ତାଙ୍କ ନିକଟକୁ ଆସି ତାଙ୍କୁ ବଡ଼ ପ୍ରଶଂସା କଲେ । ପ୍ରତାପବାବୁ ନିଜେ ଜଣେ ସଙ୍ଗୀତଜ୍ଞ ଥିଲେ । ଗୁଣ ଚିହ୍ନେ ଗୁଣିଆ । ପ୍ରତାପବାବୁ ଜଣେ ମଧ୍ୟ-ବୟସ୍କ ବ୍ୟକ୍ତି ହେଲେ ମଧ୍ୟ ତାଙ୍କ ସହିତ କାଳୀଚରଣଙ୍କର ଘନିଷ୍ଠତା କ୍ରମେ ବଢ଼ି ଚାଲିଲା । ପ୍ରାୟ ପ୍ରତିଦିନ ସ୍କୁଲରୁ ଫେରିବାବେଳେ କାଳୀଚରଣ ତାଙ୍କ ଘରକୁ ଯାଆନ୍ତି । ସେହିଠାରେ ପୂର୍ବୋକ୍ତ ଗ୍ରାମୋଫୋନ୍ ରେକର୍ଡଗାୟକ ସ୍ୱର୍ଗତ ବାସୁଦେବ ମହାପାତ୍ରଙ୍କ ସହିତ ତାଙ୍କର ପରିଚୟ ହେଲା । ଦିନେ ସେ ସେହି ରେକର୍ଡଗୀତଟି କାଳୀଚରଣଙ୍କଠାରୁ ଶୁଣି ଆନନ୍ଦରେ ତାଙ୍କୁ ଗୀତ ଶିଖାଇବାର ସ୍ୱୀକୃତି ଦେଲେ । ପ୍ରତାପବାବୁଙ୍କର ଖଣ୍ଡିଏ ହାରମୋନିଅମ୍ ଥାଏ । ସେହି ହାରମୋନିଅମ୍‌ରେ କାଳୀଚରଣଙ୍କର ବାସୁଦେବ-ବାବୁଙ୍କଠାରୁ ଗୀତଶିଖା ନିୟମିତ ଆରମ୍ଭ ହେଲା । କିନ୍ତୁ କାଳୀଚରଣଙ୍କ ଦାଦା ଓ ଅଭିଭାବକ ଜଣେ ଭିନ୍ନ ପ୍ରକୃତିର ଲୋକ ଥିଲେ । ସେ କାଳୀଚରଣଙ୍କର ସଙ୍ଗୀତ ଅନୁରାଗକୁ ପସନ୍ଦ କରୁ ନ ଥିଲେ । ତେଣୁ କାଳୀଚରଣଙ୍କ ଏ ପ୍ରକାର ସଙ୍ଗୀତ ସାଧନା ଲୁଚି ଲୁଚି ତାଙ୍କ ଅଜ୍ଞାତରେ ଚାଲୁଥାଏ ।

ସେତେବେଳେ ଖୋର୍ଦ୍ଧାର ତହସିଲଦାର ଥିଲେ ସ୍ୱର୍ଗତ ବୈଦ୍ୟନାଥ ମିଶ୍ର । ସେ ଥିଲେ ଜଣେ ମନୋଜ୍ଞ ବେହେଲା ବାଦକ ।

କାଳୀଚରଣଙ୍କ ପୂର୍ବବନ୍ଧୁ ପ୍ରତାପବାବୁ ମଧ୍ୟ ବେହେଲା ବଜାନ୍ତି । ଏବେ କାଳୀଚରଣ ପ୍ରତାପବାବୁଙ୍କ ସହିତ ତହସିଲଦାରଙ୍କ ଘରଠାକୁ ବୁଲି ଯାଇଥିଲେ । ତହସିଲଦାର ବୈଦ୍ୟନାଥ ବାବୁ ଜଣେ ଅମାୟିକ ଲୋକ ଥିଲେ । ସେ କାଳୀଚରଣଙ୍କ ଗୀତ ଶୁଣି ଖୁବ୍ ଖୁସି ହେଲେ । କାଳୀଚରଣଙ୍କ ପୂର୍ବଗୁରୁ ବାସୁଦେବ ବାବୁ ମଧ୍ୟ ସେଠାରେ ଯୋଗ ଦେଲେ । ସେ ବି ଭଲ ବେହେଲା ବଜାନ୍ତି । କାଳୀଚରଣ ସେହିଠାରେ ଉଭୟଙ୍କୁ ଗୁରୁକରି ସଙ୍ଗୀତ ଶିକ୍ଷାରେ ଅଗ୍ରସର ହେଲେ ।

ସେହି ସମୟରେ ଖୋର୍ଦ୍ଧା ନିକଟସ୍ଥ ଗୁରୁଜଙ୍ଗ ଗ୍ରାମରେ ସ୍ୱର୍ଗତ ଗୋବିନ୍ଦ ନନ୍ଦଙ୍କର ଗୋଟିଏ ଉଚ୍ଚକୋଟୀର ସଙ୍ଗୀତ ଆଖଡ଼ା ଥିଲା । ଏବେ ହାଇସ୍କୁଲର ପୁରସ୍କାର ବିତରଣୀ ସଭାରେ କାଳୀଚରଣଙ୍କ ସହିତ ତାଙ୍କର ହଠାତ୍ ପରିଚୟ ହେଲା । ଉଭୟେ ଏକଧର୍ମୀ । ତେଣୁ କ୍ରମେ ଉକ୍ତ ପରିଚୟ ଦୃଢ଼ ବନ୍ଧୁତାରେ ପରିଣତ ହେଲା । କାଳୀଚରଣ ମଧ୍ୟେ ମଧ୍ୟେ ଗୁରୁଜଙ୍ଗ ଯିବା ଆସିବା କଲେ । ଗୋବିନ୍ଦ ନନ୍ଦେ ଥିଲେ ଜଣେ ସୁଗାୟକ ଓ ବିଶିଷ୍ଟ ନୃତ୍ୟଗୁରୁ । କାଳୀଚରଣ ତାଙ୍କ ପାଖକୁ ଯାଇ ତାଙ୍କ ନୃତ୍ୟଶିକ୍ଷା ଦେବାର ପଦ୍ଧତିମାନ ଦେଖନ୍ତି ଓ ଗୀତ ଗାଆନ୍ତି ।

କାଳୀଚରଣଙ୍କ ଗୀତରଚନା କରିବାର କ୍ଷମତା ସେ ଜାଣିଗଲେ । ସେ କାଳୀଚରଣଙ୍କ ରଚିତ କେତୋଟି ଗୀତ ନେଇ ନିଜ ଆଖଡ଼ା ପିଲାଙ୍କ-ଦ୍ୱାରା ସେଗୁଡ଼ିକର ନୃତ୍ୟାଭିନୟ ପ୍ରଦର୍ଶନକଲେ । ଲୋକ ମୁଖରେ ସେହି ଗୀତଗୁଡ଼ିକର ପ୍ରଶଂସା ପ୍ରଚାରିତ ହେବାରେ ଲାଗିଲା । ସ୍ଥାନୀୟ ଯୁବକମାନଙ୍କୁ ଏକତ୍ରିତକରି କାଳୀଚରଣ ବହୁ ଆୟାସରେ ଖୋର୍ଦ୍ଧାଠାରେ ଗୋଟିଏ ନାଟକ ମଧ୍ୟ ମଞ୍ଚସ୍ଥ କରିଥିଲେ ।

୧୯୧୬ ମସିହାରେ କାଳୀଚରଣ ଖୋର୍ଦ୍ଧା ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କଲେ । ତଦାନିନ୍ତନ ଲବ୍ଧପ୍ରତିଷ୍ଠ ଉତ୍କଳ ଓ ପରବର୍ତ୍ତୀ କାଳରେ ଓଡ଼ିଆ ଭାଷାକୋଷର ପ୍ରଣେତା ସ୍ୱର୍ଗୀୟ ଗୋପାଳ-ଚନ୍ଦ୍ର ପ୍ରହରାଜ କାଳୀଚରଣଙ୍କ ପିତାଙ୍କର ସଙ୍ଗାତ ଥିଲେ । ତେଣୁ କାଳୀଚରଣ ତାଙ୍କର ତତ୍ତ୍ୱାବଧାନରେ ରହି କଟକ ରେଭେନ୍ସା କଲେଜରେ ଭର୍ତ୍ତିହେଲେ ।

କାଳୀଚରଣଙ୍କ କଲେଜ ଜୀବନର ବନ୍ଧୁମାନଙ୍କ ମଧ୍ୟରେ ଡଃ ହରେକୃଷ୍ଣ ମହତାବ, ସର୍ବଶ୍ରୀ ହରିହର ମର୍ଦ୍ଦରାଜ, ବାମଦେବ ମିଶ୍ର, ରାମଚନ୍ଦ୍ର ମହାପାତ୍ର, ରମଚନ୍ଦ୍ର ମହାପାତ୍ର (ପୁରୀ), ମୋହିନୀମୋହନ ଦାସ, ପ୍ରସନ୍ନକୁମାର ଦାସ, ଡାକ୍ତର କାଶୀନାଥ ମିଶ୍ର ଏବଂ ସ୍ୱର୍ଗତ ଡକ୍ଟର କରୁଣାକର କର ଓ ମନ୍ମଥନାଥ ଗୁହ ପ୍ରଭୃତିଙ୍କ ସହିତ ତାଙ୍କର ବିଶେଷ ଘନିଷ୍ଠତା ଥିଲା । ସ୍ୱର୍ଗତ ଯଦୁମଣି ମଙ୍ଗରାଜ ତାଙ୍କର ଜଣେ ଅତି ପ୍ରିୟ ବନ୍ଧୁ ଓ ସଙ୍ଗୀତ ରଚନାର ଉତ୍ସାହଦାତା ଥିଲେ । ଏହି ସମୟ ମଧ୍ୟରେ ସେ ପୂର୍ବୋକ୍ତ ରେକର୍ଡ଼ ସଙ୍ଗୀତ ଗାୟକ ସ୍ୱର୍ଗତ ଖାନୁମିଆଁ ଓ କାନ୍ଥି (ମେଦିନୀପୁର) ର ଜୀତେନ୍ଦ୍ର ଅଧିକାରୀଙ୍କ ଠାରୁ ଗୀତ, ଏସ୍ରାଜ୍ ଏବଂ ବଂଶୀବାଦନ ଶିକ୍ଷା କରିଥିଲେ । କଟକରେ ସେ ତାଙ୍କର ପିତୃବନ୍ଧୁ ବିଶିଷ୍ଟ ଚିତ୍ରକର ଓ କଳାପ୍ରେମୀ ସ୍ୱର୍ଗତ ସତୀଶଚନ୍ଦ୍ର ସରକାର (ନାଟୁ ସରକାର)ଙ୍କ ସଂସ୍ପର୍ଶରେ ଆସି ନାଟୁବାବୁଙ୍କ ଥିଏଟର ଦଳ ନିମନ୍ତେ ଗୀତରଚନା ଓ ସ୍ୱର ସଂଯୋଜନା ଆଦି କରିଥିଲେ । ସ୍ୱର୍ଗତ ନାଟ୍ୟକାର ଗୋବିନ୍ଦଚନ୍ଦ୍ର ସୁରଦେଓଙ୍କ ଓଡ଼ିଶାରେ ପ୍ରଥମ ପ୍ରବର୍ତ୍ତିତ ରାସଦଳର ସ୍ୱର ଯୋଜନା ଓ ନୃତ୍ୟଶିକ୍ଷା ଦାନରେ ସାହାଯ୍ୟ କରିବାର ସୁଯୋଗ ମଧ୍ୟ ଏହି ସମ୍ପର୍କରେ ତାଙ୍କୁ ମିଳିଥିଲା । ମୋଟାମୋଟି କହିବାକୁ ଗଲେ, ସେତେବେଳକୁ ତାଙ୍କର ଗୀତରଚନା, ସ୍ୱର ସଂଯୋଜନା ଓ ନୃତ୍ୟକଳାରେ ପାରଦର୍ଶିତା ଆଦି ଗୁଣମାନ କେବଳ କଟକ କାହିଁକି ସାରା ଓଡ଼ିଶାରେ ଜଣାଶୁଣା ହୋଇସାରିଥିଲା । ୧୯୧୭ ମସିହାରେ ତାଙ୍କର କବିତା ପୁସ୍ତକ 'କଳାହାଣ୍ଡିଆ ମେଘ' ଅରୁଣୋଦୟ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । ପରେ ପରେ ୧୯୧୯ ମସିହାରେ ତାଙ୍କ ରଚିତ 'ଧ୍ରୁବ'ନାଟକ, ଶିଶୁକବିତା 'ବାପୁଧନଟି' ଓ ଭକ୍ତି ସଙ୍ଗୀତ'ବରଣଡାଲି' ପ୍ରକାଶ ପାଇଲା । ଏହି କାଳରେ ସେ ଖଣ୍ଡିଏ ଉପନ୍ୟାସ ମଧ୍ୟ ଲେଖିଥିଲେ; ତାହା ଏବେ ମଧ୍ୟ ଅପ୍ରକାଶିତ ରହିଛି ।

ଆଇ.ଏ.ପାସ୍ ପରେ କଲେଜରେ ତୃତୀୟ ବର୍ଷରେ ପଢ଼ୁଥିବାବେଳେ ୧୯୧୯ ମସିହା ମାଘମାସ ବଡ଼ ଏକାଦଶୀ ଦିନ ତାଙ୍କର ପିତୃବିୟୋଗ ଘଟିଲା । ଏହି କାରଣ ଓ ଅନ୍ୟାନ୍ୟ ଆତ୍ମୀୟମାନଙ୍କର ଉଦାସୀନତା ମୁଖ୍ୟତଃ ତାଙ୍କୁ କଲେଜ ଅଧ୍ୟୟନ ସମାପ୍ତକରି ଜୀବନ ସଂଗ୍ରାମରେ ଯୋଗଦେବାକୁ ବାଧ୍ୟ କଲା ।

# କର୍ମଗ୍ଚରୀ ଜୀବନ

୧୯୧୯ରେ ପିତୃହୀନ ହେବାପରେ ଘରର ସ୍ୱଜନଙ୍କ ଠାରୁ କୌଣସି ସାହାଯ୍ୟ ନ ପାଇ କାଳୀଚରଣ ରାଜା ବିଶ୍ୱମ୍ଭର ମଙ୍ଗରାଜଙ୍କ ପାଖରେ ପହଞ୍ଚିଲେ । ସେ କାଳୀଚରଣଙ୍କୁ ପଚିଶଟି ଟଙ୍କା ଦେଲେ । ଗୁପ୍ତ ବେପାରୀଙ୍କ ଡଙ୍ଗାରେ ବସି କାଳୀଚରଣ ସମ୍ବଲପୁର ଗଲେ । ସେଠାରେ ସେତେବେଳେ, L. C. ରାମ୍ସେ ସାହେବ ଥାଆନ୍ତି ଗଡ଼ଜାତର ପଲିଟିକାଲ ଏଜେଣ୍ଟ । ରାମ୍ସେ ସାହେବଙ୍କ ସହିତ ପିତାଙ୍କର ବିଶେଷ ପରିଚୟ ଥିବାକଥା କାଳୀଚରଣ ଶୁଣିଥିଲେ । ତାଙ୍କ ସହିତ ଦେଖା କରି ଖଣ୍ଡିଏ ସୁପାରିଶ ଆଶାରଖି କାଳୀଚରଣ ବଡ଼ମ୍ବାଠାରୁ ନଦୀପଥରେ ଯାଇ ସମ୍ବଲପୁରଠାରେ ଛଅଦିନ ପରେ ପହଞ୍ଚିଲେ । ଅପରିଚିତ ସ୍ଥାନରେ କେଉଁଠି ରହିବେ ବୋଲି ଭାବି, ଲୋକଙ୍କୁ ପଚାରି ସମ୍ବଲପୁର ପୁଲିସ୍ ଲାଇନ୍‌ରେ ଆଶ୍ରୟ ନେଇ ସହର ବୁଲି ବାହାରିଲେ ସଞ୍ଜବେଳେ । ବାଟରେ ଏକ ଭଦ୍ରଲୋକଙ୍କ ବାହାର ଘରେ ଗୀତବାଦ୍ୟ ଶୁଣିଲେ । ରାସ୍ତାକୁ ବୈଠକ ଦେଖାଯାଉଥିଲା । ଗୀତରେ ଆକୃଷ୍ଟ ହୋଇ ରାସ୍ତା ଉପରେ କାଳୀଚରଣ କିଛିବେଳ ଠିଆ ହୋଇଥିବାର ଦେଖି ବୈଠକରୁ ଜଣେ ଭଦ୍ରଲୋକ ଉଠିଆସି ତାଙ୍କୁ ଭିତରକୁ ଡାକିଲେ । କଥା ପଡୁପଡୁ କାଳୀଚରଣ ଗାଇ ପାରୁଥିବା ଜାଣି ତାଙ୍କ ଅନୁରୋଧରେ କାଳୀଚରଣ ଦୁଇ ତିନିଟି ଗୀତ ଗାଇଲେ । ଭଦ୍ରଲୋକ ତାଙ୍କ ସହିତ ବେହେଲା ସଙ୍ଗତ କଲେ । ସମସ୍ତେ ବଡ଼ ଖୁସିହେଲେ । କ୍ରମେ ପରିଚୟ ଜମିଗଲା । ଭଦ୍ରଲୋକଙ୍କ ନାମ ଡକ୍ଟର ବି. ସନାତନ । ସେ କାଳୀଚରଣଙ୍କ ଠାରୁ ସମ୍ବଲପୁର ଆସିବାର ଅଭିପ୍ରାୟ ଶୁଣି, ଲୋକ ପଠାଇ ପୁଲିସ ଲାଇନ୍‌ରୁ ତାଙ୍କ ବିଛଣା ଓ ସୁଟ୍‌କେଶ ମଗାଇ ନେଇ ନିଜଘରେ ରଖାଇଲେ । ପରଦିନ ସାହେବଙ୍କର ସାକ୍ଷାତ ହେଲା । ସାହେବ ବଡ଼ ଦୁଃଖ କଲେ ଓ ଯଥାଶୀଘ୍ର କିଛି କରିବେ କହିଲେ । ଡାକ୍ତର ସନାତନଙ୍କ ଅନୁରୋଧରେ ସେଠାରେ ତିନି ଚାରିଦିନ ରହି ପୁଣି ଲେଉଟାଣି ଡଙ୍ଗାରେ କାଳୀଚରଣ ବଡ଼ମ୍ବା ଫେରି ସେଠାରେ ତାଙ୍କ ଦାଦାଙ୍କ ସହିତ ନିଜଘରେ କିଛିଦିନ ରହିଲେ । ଦିନେ ହଠାତ୍ ଉଣ୍ଟାରିକା ଓ ନୀଳମାଧବ ଦର୍ଶନକୁ ଯିବାଲାଗି ରାଜାଙ୍କୁ କହିବାରୁ ସେ ଯିବାକୁ ହାତିଟିଏ ଦେଲେ । ମହାନଦୀ ଏପାରିରେ ଉଣ୍ଟାରିକା, ଆରପାରିରେ କଣ୍ଟିଲୋରେ ନୀଳମାଧବ ଦର୍ଶନ କରିବାବେଳେ

ଖଣ୍ଡପଡ଼ା ରାଜା ୰ ରାମଚନ୍ଦ୍ର ଭ୍ରମରବର କର୍ଣ୍ଣେଲେ ଆସିଛନ୍ତି ଶୁଣି ତାଙ୍କ ସହିତ ଦେଖା କରିବାକୁ ଇଚ୍ଛାକଲେ । ସେ ଆଗରୁ ଶୁଣିଥିଲେ ଯେ ଖଣ୍ଡପଡ଼ା ରାଜା ଜଣେ ଗୁଣଜ୍ଞ, ସଙ୍ଗୀତ ଓ ସାହିତ୍ୟ ରସିକ । ପୁଣି ଶୂନ୍ୟ ହାତରେ ରାଜଦର୍ଶନ ନିଷିଦ୍ଧ । କାଳୀଚରଣ ଗୋଟିଏ ଗୀତ ରାଜାଙ୍କ ନାମରେ ଭଣିତା କରି ଲେଖି ତାଙ୍କୁ ଦେଖା କଲେ ଓ ଗୀତଟି ଗାଇ ଶୁଣାଇଲେ । ରାଜା ଗୀତଟି ଶୁଣି ଏବଂ ବଂଶ ପରିଚୟ ପାଇ ଭାରି ଖୁସି ହେଲେ । କାଳୀଚରଣଙ୍କୁ ବିଦାୟ ନଦେଇ ଖଣ୍ଡପଡ଼ା ଆଡ଼କୁ ଯିବାକୁ ଅନୁରୋଧ କଲେ । ବଡ଼ମ୍ବା ରାଜାଙ୍କ ନିକଟକୁ ଏ ଖବର ଦେଇ ହାତୀ ଫେରାଇ ଦେଲେ । ଏକବସ୍ତ୍ର ହୋଇ କାଳୀଚରଣ ଯାଇଥାଆନ୍ତି । ରାଜା ସମସ୍ତ ବ୍ୟବସ୍ଥା କରାଇ ଦେଇଥିଲେ ଓ ୩ । ୪ ଦିନ ପରେ ତାଙ୍କ ସହିତ ଗଡ଼କୁ ନେଇ ଗଲେ । ଖଣ୍ଡପଡ଼ାରେ ସେତେବେଳେ ଦେଓ୍ୱାନ ଥିଲେ ସ୍ୱର୍ଗତ ଭଗବତବଲ୍ଲଭ ଦାସ । ତାଙ୍କ ବସାପାଖେ ଡାକବଙ୍ଗଳାରେ ରହି କାଳୀଚରଣ ୪ । ୫ ଦିନ କାଟିଲେ । ଇତି ମଧ୍ୟରେ ଦେଓ୍ୱାନଙ୍କ ସହିତ ପରିଚୟ ମଧ୍ୟ ଘନିଷ୍ଠ ହୋଇଉଠିଲା । ବିଦାୟ ନେବା ଦିନ ସ୍ଥିରହେଲା । ହଠାତ୍ ସକାଳେ ଦେଓ୍ୱାନ କାଳୀଚରଣଙ୍କୁ ଡକାଇ ହସି ହସି ଖଣ୍ଡିଏ ଚିଠି ବଢ଼ାଇ ଦେଲେ । ଚିଠିଟି ରାମସେ ସାହେବ ଦେଇଥାନ୍ତି । କାଳୀଚରଣଙ୍କୁ ଖଣ୍ଡପଡ଼ା ସ୍କୁଲ ପରିଦର୍ଶକ ରଖିବାକୁ ଏ ପତ୍ର । ବାଙ୍କୀ ଠିକଣାରେ କାଳୀଚରଣଙ୍କ ପାଖକୁ ମଧ୍ୟ ଚିଠିର ନକଲ ଯିବାର ଉଲ୍ଲେଖ ଅଛି । ରାଜାଙ୍କ ପାଖକୁ ଖବରଗଲା । ଆଉ ଘରକୁ ନ ଫେରି ସେହିଦିନ କାଳୀଚରଣ କାର୍ଯ୍ୟରେ ଯୋଗଦେଲେ । ରାଜା ଅତ୍ୟନ୍ତ ଆନନ୍ଦିତ । ଦୁଇ ଦିନପରେ ରାଜା ପାଟଯୋଡ଼ ଓ ପଚିଶ ଟଙ୍କା ଦେଇ ହାତୀରେ କାଳୀଚରଣଙ୍କୁ ଦୁଇଦିନ ଛୁଟି ଦେଇ ଗାଆଁକୁ ବିଦାୟ କଲେ ।

କାଳୀଚରଣ ବାଙ୍କୀରେ ପହଞ୍ଚି ଦୁଇଦିନ ରହି ମାତା ରାଧାମାଳୀଙ୍କ ଆଶୀର୍ବାଦ ନେଇ ଖଣ୍ଡପଡ଼ା ଲେଉଟିଲେ । ଗଡ଼ଲଗି ରାଜା ଚଞ୍ଚଳପ୍ୟାରୀ ନାମକ ହାତୁଣୀକୁ ସ୍ୱତନ୍ତ୍ର ଭାବେ କାଳୀଚରଣଙ୍କ ବ୍ୟବହାର ପାଇଁ ଦେଇ ଥାଆନ୍ତି । ଗଡ଼ ବ୍ରାହ୍ମଣ ସାହିର ଜଣେ ଇନସ୍‌ପେକ୍ଟିଂ ପଣ୍ଡିତ ଥାଆନ୍ତି । ତାଙ୍କ ନାମ ଚତୁର୍ଭୁଜ ମିଶ୍ର । ସେ ବେହେଲା-ବାଦକ । ସହଦେବ ଜୟସିଂହ ହାତୀର ମାହୁନ୍ତ । ତାକୁ ଚଞ୍ଚଣୀ ବଜାଇ ଆସେ । ଚଞ୍ଚଳପ୍ୟାରୀର ଏକ ଦୁର୍ଗୁଣ ଯେ ସେ ଖରାରେ ଯାଇ ପାରେ ନାହିଁ । ଗଲେ ଗଛ

ବୁଦାରେ ଘଷି ହୋଇ ଆରୋହୀଙ୍କ ତଳକୁ ଫିଙ୍ଗି ଦିଏ । ତେଣୁ ଗସ୍ତଟା ଖରା ମଣ୍ଟାଳଲେ ବା ରାତିରେ ହୁଏ । ବଣ ବାଟ । ଗୋଟିଏ ଗାଁରୁ କତା-ହୁଳା ଜାଳି ଦୁଇ ଜଣ ଲୋକ ଅନ୍ୟ ଗାଁକୁ ଯାଇ ଛାଡ଼ି ଦେଇ ଆସନ୍ତି । ଏହି ଯିବା ବେଳରେ କାଳୀବାବୁ ଗାଆନ୍ତି, ଚତୁର୍ଭୁଜ ମିଶ୍ରେ ବେହେଲା ବଜାନ୍ତି, ସହଦେବ ଖଞ୍ଜଣୀ ବଜାଏ , ହାତୀ ଜଙ୍ଗଲରେ ଚାଲେ । ଏଇ ହେଲା ଗସ୍ତ-ଜୀବନ ।

ଖଣ୍ଡପଡ଼ାରେ ଥାଇ କାଳୀଚରଣ ଗଡ଼ର କେତେକ ବାଳକଙ୍କୁ ନେଇ ଗୋଟିଏ ରାସଦଳ ଗଢ଼ିଲେ । କଳଙ୍କ ଭଞ୍ଜନ ଏହି ଦଳର ପ୍ରଥମ ଅଭିନୀତ ରାସ ।

ପ୍ରାୟ ଦୁଇ ବର୍ଷ ପରେ ରାଜା ରାମଚନ୍ଦ୍ରଙ୍କ ବିୟୋଗ ହେଲା । ସେ କାଳୀଚରଣଙ୍କୁ ଅତି ଆଦର କରୁଥିଲେ । ରାଜାଙ୍କ ମୃତ୍ୟୁର କିଛି ଦିନ ପରେ ସେ ଖଣ୍ଡପଡ଼ା ଛାଡ଼ି ଚାଲିଆସିଲେ କଟକକୁ । ୧୯୨୧ ମସିହା, ବର୍ଷା-ଦିନ । ମହାନଦୀରେ କଟକକୁ ବେପାରୀଙ୍କ ଡଙ୍ଗା ଚାଲୁଥାଏ । ସେତେବେଳକୁ କାଳୀଚରଣଙ୍କର ଦୁଇ ତିନି ଖଣ୍ଡି ବହି ଛପା ସରିଥାଏ । ସେଗୁଡ଼ିକ କଟକ ପ୍ରିଣ୍ଟିଂ କମ୍ପାନୀ ବହି ଦୋକାନରେ ଜମା ଥିଲା । ଏକାନ୍ତ ଅର୍ଥାଭାବ । ହଠାତ୍ କଟକ ଚାଲି ଆସି ତହିଁ ପରଦିନ ସକାଳେ ପ୍ରିଣ୍ଟିଂ କମ୍ପାନୀକୁ ଗଲେ । ମ୍ୟାନେଜର କାଶୀବାବୁ ତାଙ୍କୁ କମ୍ପାନୀ ଅଫିସ ଦୋତାଲା ଉପରର ଗୋଟିଏ କୋଠରୀରେ ରହିବାକୁ କହିଲେ । ଗୋପାଳ-ଜୀଉଙ୍କ ପ୍ରସାଦ ଅଣାଇ ଖୁଆଇଲେ । ଖାଇବା ପରେ ଗୁଡ଼ିଏ ବଙ୍ଗଳା ଇଂରାଜୀ ଖବର କାଗଜ ଆଣିଦେଇ ଶନିବାର ଦିନ ନିମନ୍ତେ ଉତ୍କଳ ଦୀପିକା କାଗଜଲାଗି ସମ୍ପାଦକୀୟ ସେଇଦିନ ଲେଖିକରି ଦେବାକୁ ଅନୁରୋଧ କଲେ । କାଳୀଚରଣ ମହା ଅଡୁଆରେ ପଡ଼ିଲେ । ଖବର କାଗଜର ସମ୍ପାଦକୀୟ ସେ କଅଣ ବା କେମିତି ଲେଖିବେ ? ବହୁତ ନା-ନା, ହଁ-ହଁ ଭିତରେ ଲେଖି ଦେଲେ । ରାତିରେ କମ୍ପୋଜ ହୋଇ ଶନିବାର ସକାଳେ କାଗଜ ବାହାରିଲା । କାଳୀଚରଣ ସମ୍ପାଦକୀୟ ଦାୟିତ୍ୱରେ ଅପାତତଃ ସେଇଠି ରହିଥାଆନ୍ତି ।

ରବିବାର ସକାଳ—ପ୍ରାୟ ଆଠଟା । ଉକ୍ତ ପ୍ରିଣ୍ଟିଂ କମ୍ପାନୀର ପିଅନ ଫକୁ ମିଆଁ କାଳୀଚରଣଙ୍କ ପାଖକୁ ଆସି କହିଲା ଯେ ମଧୁବାବୁ

ଚଳେ ଅଛନ୍ତ,—ଡାକୁଛନ୍ତ । ଅତ୍ତ ସନ୍ତର୍ପଣରେ କାଳୀଚରଣ ତାଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରଣାମ କଲେ । ମଧୁବାବୁ ବଙ୍ଗଳାରେ ସଂପାଦକୀୟ କିଏ ଲେଖିଛୁ ବୋଲି ପଚ୍ଛରିଲେ । ପିତ୍ତ ପରିଚୟ ପାଇ ସେ ଚାହିଁଥିବାର କହି, ଲେଖା ପସନ୍ଦ କଲେ ଓ ଏଇଠି ରହିବାର ବ୍ୟବସ୍ଥା କରିବେ ବୋଲି କହି ଚୁଲିଗଲେ । ସବୁ କଥା ମ୍ୟାନେଜର କାଶୀବାବୁ ଶୁଣିଲେ । ସ୍ୱର୍ଗତ ଉତ୍କଳ କଲ୍ପତରୁ ଦାସ ପ୍ରାୟ ପାଞ୍ଚଟା-ବେଳେ ଆସି କାଳୀଚରଣଙ୍କୁ ଡକାଇଲେ । ସେ କାଳୀଚରଣଙ୍କ ପିତ୍ତବନ୍ଧୁ । ପ୍ରିଣ୍ଟ କମ୍ପାନୀ ଅନ୍ୟତମ ଡାଇରେକ୍ଟର ସ୍ୱର୍ଗତ ଭିକାରୀଚରଣ ପଟ୍ଟନାୟକଙ୍କ ଘରକୁ କାଳୀଚରଣଙ୍କୁ ତାଙ୍କ ଘୋଡ଼ାଗାଡ଼ିରେ ନେଇ ମିଃ ଦାସ ତାଙ୍କୁ କାଳୀଚରଣଙ୍କ ପତ୍ରିକା ସଂପାଦକ ରୂପେ ରହିବା ପ୍ରସ୍ତାବ କହିଲେ । ଭିକାରୀବାବୁ ମଧ୍ୟ କାଳୀଚରଣଙ୍କ ପିତ୍ତବନ୍ଧୁ । ସେ ଆନନ୍ଦରେ ସ୍ୱୀକୃତ ଦେଲେ । ଏହାପରେ କାଳୀଚରଣ 'ବଉଳ ବେଣୀ', 'ଚରଣ ଚୁଟିଆ ଡଗ' ଇତ୍ୟାଦି ଗ୍ଳେଟ ବହିମାନ ଲେଖି ପ୍ରକାଶ କଲେ ।

ପ୍ରାୟ ଦେଢ଼ବର୍ଷ ପରେ କାଳୀଚରଣ ମୟୂରଭଞ୍ଜ ମହାରାଜା ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କୁ ସାକ୍ଷାତ କରିବାକୁ ଯାଇ ତାଙ୍କର ବନ୍ଧୁ ସ୍ୱର୍ଗତ ବଂଶୀଧର ପଟ୍ଟନାୟକଙ୍କ ବସାରେ ପ୍ରାୟ ମାସେକାଳ ଅପେକ୍ଷା କଲେ । ଜଣେ ବଂଗୀୟ ପ୍ରାଇଭେଟ୍ ସେକ୍ରେଟେରୀ ସାକ୍ଷାତର ସମସ୍ତ ସୁଯୋଗ କରାଇ ଦେଲେ ନାହିଁ । ଦିନେ ଖରାଦିନ ରାତିରେ ମାତ୍ର ଖଣ୍ଡିଏ ଗେଞ୍ଜି ଓ ଟାଳେଣ୍ଟ ଚଟି ପିନ୍ଧି କାଳୀଚରଣ ତାଙ୍କର ପ୍ରିୟ ବଂଶୀଟି ଧରି ବାରିପଦା ବାବୁସାହିର ଗ୍ଳେଟ ପୋଲ ଉପରେ ବସି ବଂଶୀରେ ବେହାଗରାଗ ବଜାଉଥିଲେ ନିକଟବର୍ତ୍ତୀ ରାଜନବରର ବଡ଼ ଝରକା ଖୋଲାଥାଏ । ମହାରାଜା ଓ ତାଙ୍କ ସଙ୍ଗୀମାନେ କେହି ଗୀତ ବାଦ୍ୟରେ, କେହି ଖେଳରେ ମାତିଥାଆନ୍ତି । ଝରକା ଭିତରୁ ସବୁ ଦିଶୁଥାଏ । ଏତିକିବେଳେ ଜଣେ ଲୋକ ଆସି ମହାରାଜା ଡାକୁଛନ୍ତି ବୋଲି କହିଲା । କାଳୀଚରଣ ତା ସହିତ ଗଲେ । ବେଶ ଦେଖି ମହାରାଜା ତାଙ୍କୁ ସାଧାରଣ ଜଣେ ବଂଶୀବାଦକ ମନେକରି ତଳେ ବିଛା ହୋଇଥିବା ସତରଞ୍ଜିରେ ବସିବାକୁ କହି ବଂଶୀ ବଜାଇବାକୁ ନିର୍ଦ୍ଦେଶ ଦେଲେ ଓ ପରେ ପରିଚୟ ପଚ୍ଛରିଲେ । କାଳୀଚରଣ କେବଳ କଟକର ଲୋକବୋଲି କହିଲେ । ମହାରାଜା କାଳୀଚରଣଙ୍କର ସଙ୍ଗୀତ ଜ୍ଞାନ ସମ୍ବନ୍ଧେ ପ୍ରଶ୍ନ କଲେ ଓ

ଉତ୍ତରରେ କାଳୀଚରଣ ନିଜର ଅକ୍ଷମତା ପ୍ରକାଶ କଲେ । ତହିଁ ଆରଦିନ ଦେଖା କରିବାକୁ କହି ତାଙ୍କୁ ବିଦାୟ ଦେଲେ ମହାରାଜା ।

ପରଦିନ ନିର୍ଦ୍ଦିଷ୍ଟ ସମୟରେ ଦେଖା କରିବାକୁ କାଳୀଚରଣ ଲୁଗାପଟା ପିନ୍ଧି ଉପସ୍ଥିତ । ଏକ ସିଢ଼ି ପାରହେଲେ ମହାରାଜାଙ୍କ ଅଫିସ । ଗୋଲସିଢ଼ିର ମୁଣ୍ଡରେ ପ୍ରାଇଭେଟ ସେକ୍ରେଟେରୀ ବସନ୍ତି । ମହାରାଜାଙ୍କ ଲୋକ ଦୋତାଲା ଉପରୁ କାଳୀଚରଣଙ୍କୁ ନେବାକୁ ଆସି ସଙ୍ଗରେ ନେବାବେଳେ ପ୍ରା: ସେ: ବାଧା ଦେଲେ ଓ ଲୋକଟି ମହାରାଜା ଡକାଇଛନ୍ତି କହିଦେଇ, କାଳୀଚରଣଙ୍କ ପଛେ ପଛେ ଗଲେ । କାଳୀଚରଣ ମହାରାଜାଙ୍କ ଅଫିସ ଦ୍ୱାରରେ ପରଦାର ବାହାରେ ଲୋକଟିକୁ ଖଣ୍ଡିଏ ଭିଜିଟିଙ୍ଗ୍ କାର୍ଡ଼ଦେଇ ଅପେକ୍ଷା କଲେ । ମହାରାଜା ପ୍ରଥମେ ଚାକରଟିକୁ ବିରକ୍ତ ହେଲେ ଓ ଏ ସେହି କାଳି ବାତର ଲୋକ ବୋଲି ଶୁଣିନେଇ ହସି ସବୁ ବିଷୟ ବୁଝିଲେ । କାଳୀଚରଣ ସେଠାରେ କ୍ରମେ ମହାରାଜ, ଜ୍ୟେଷ୍ଠରାୟ ( ପରେ ମହାରାଜା) ପ୍ରତାପ ଚନ୍ଦ୍ରଙ୍କର ପ୍ରିୟପାତ୍ର ହୋଇ ରହି ଗୋଟିଏ ଥିଏଟର ୧୯୨୩ରେ ଗଢ଼ିଲେ । ଦକ୍ଷିଣସାହି ଛଉ ନୃତ୍ୟରେ କାଳୀଚରଣ ସହଯୋଗ କଲେ । ତାଙ୍କ ରଚିତ 'ରସଲତା' ଓ 'ସଂସାରେ ଗୃହୀ' ଗୀତ ସହିତ ନାଚ ବସାଇଲେ । ଏବେ ମଧ୍ୟ ସେ ଗୀତ ପ୍ରଚଳିତ ଅଛି । ଏହି ସମୟରେ ତାଙ୍କର ବିବାହ ହୋଇଥିଲା ।

ମହାରାଜା ଓ ଜ୍ୟେଷ୍ଠରାୟଙ୍କ ପ୍ରୀତିଭାଜନ ହେବାରୁ କେତେକ ବାରିପଦାବାସୀ କାଳୀଚରଣଙ୍କୁ ଶୁଭ ଦୃଷ୍ଟିରେ ଦେଖିଲେ ନାହିଁ । କାଳୀଚରଣ 'ହାଲଫେସନ' ବୋଲି ଖଣ୍ଡିଏ ବହିଲେଖି ନିଜ ନାଆଁ ନ ଦେଇ 'ଶ୍ରୀ ଚଣ୍ଡୀ' ନାମରେ ପ୍ରକାଶ କଲେ । ଏହା ଏକ ବ୍ୟଙ୍ଗ କବିତା ପୁସ୍ତିକା । ଲୋକେ ମହାରାଜାଙ୍କୁ ନାନା କଥା କହି କାଳୀଚରଣଙ୍କ ପ୍ରତି ଅସନ୍ତୁଷ୍ଟ କରାଉଥିବାପରି ଜାଣି କାଳୀଚରଣ ଏକ ମାସ ଛୁଟୀ ନେଇ ବାରିପଦା ଛାଡ଼ିଲେ; ଆଉ ଫେରିଲେ ନାହିଁ ।

## ଅନ୍ୟ ଏକ ଅଧ୍ୟାୟ

ବାରିପଦାରେ ଥିବାବେଳେ ସେ ଲାଲସାହେବଙ୍କ କନ୍ୟା ରହସ୍ୟ ମଞ୍ଜରୀଙ୍କୁ ସଙ୍ଗୀତ ଶିକ୍ଷା ଦେଉଥିଲେ । ପରେ ରହସ୍ୟ ମଞ୍ଜରୀ ପୁରୀ ରାଜା ସ୍ୱର୍ଗତ ରାମଚନ୍ଦ୍ର ଦେବଙ୍କୁ ବିବାହ କରିଥିଲେ । କାଳୀଚରଣ

ପୁରୀ ଆସି ତାଙ୍କୁ ଭେଟି ସବୁକଥା କହିଲେ ଓ ପୁରୀ ରାଜା ତାଙ୍କୁ ସଭା କବି ଓ ଗାୟକ ରୂପେ ରଖି, ପରେ ମନ୍ଦିରର ପରିଚାଳନାରେ ଅଂଶ ଗ୍ରହଣ କରିବାକୁ ନିଯୁକ୍ତ ଦେଲେ ।

ଏଠାରେ ପ୍ରାୟ ଦୁଇ ବର୍ଷ ପରେ ରାଜାଙ୍କ ସହିତ ମନାନ୍ତର ଘଟିଲା ଓ ଏହିକିବେଳେ କାଳୀଚରଣ H.M.V. ରେକର୍ଡ଼ କମ୍ପାନୀର ଡାକରାରେ 'ଚୁମ୍ବକ ଝକ୍‌ମାରି' ଗୀତଟି ରେକର୍ଡ଼ରେ ଗାଇଲେ । ଧନେ ସେହି ଖଣ୍ଡିକ ରାଜାଙ୍କୁ ଭେଟି ଆଉ ଚାକିରି କଲେ ନାହିଁ । ନିଜେ ଗୋଟିଏ ଛାପାଖାନା କଲେ । ସ୍ୱର୍ଗତ ଶଶିଭୂଷଣ ରଥ ଓ ଧରାକୋଟ ରାଜା ସ୍ୱର୍ଗତ ମଦନମୋହନ ତାଙ୍କୁ ସାହାଯ୍ୟ କଲେ । ଏତେବେଳକୁ ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ 'ପୁରୀବାସୀ' ନାମରେ ଖଣ୍ଡିଏ ସାପ୍ତାହିକ ପତ୍ରିକା ପ୍ରକାଶ କରୁଥାନ୍ତି । ତାଙ୍କର ସନିର୍ବନ୍ଧ ଅନୁରୋଧରେ ଅବୈତନିକ ଭାବରେ କାଳୀଚରଣ ପୁରୀବାସୀର ସଂପାଦନା କରୁଥାନ୍ତି । କାଳୀଚରଣ ବାରିପଦାରୁ ଫେରି 'ବନଫୁଲ' ନାମକ ଗୋଟିଏ କ୍ଷୁଦ୍ର ଗଳ୍ପ-ସଂଚୟନ ପୁସ୍ତକ ଲେଖିଲେ । ପରେ ପରେ ହରିଶ୍ଚନ୍ଦ୍ର ଓ ଶକୁନ୍ତଳା ନାଟକ (ବାରିପଦାରେ ଲିଖିତ ଓ ଅଭିନୀତ) ପ୍ରକାଶ କଲେ । ନିଜର ଛାପାଖାନା ନାମ 'ସଙ୍ଗୀତ-ପ୍ରଭା' ପ୍ରେସ୍ ରଖି ଓଡ଼ିଶାରେ ପ୍ରଥମେ ସଙ୍ଗୀତ ସମ୍ବନ୍ଧୀୟ ମାସିକ ପତ୍ରିକାଟିଏ "ସଙ୍ଗୀତ-ପ୍ରଭା" ସଂପାଦନା କଲେ ।

## ପରିବର୍ତ୍ତନ

ଏହାପରେ ତାଙ୍କ ରାସଦଳର ଆରମ୍ଭ ୧୯୨୭ ରେ ହେଲା । ସ୍ୱର୍ଗତ ରଙ୍ଗନାଥଦେବ ଗୋସ୍ୱାମୀ (ଗୋପାଳ ଗୋସାଇଁ) ଓ ସୁଆର-ସାହିର ବାସୁଦେବ ମହାପାତ୍ରଙ୍କ ସହିତ ମିଳିତ ଭାବେ ରାସଦଳ ଆରମ୍ଭକରି ସୁଖ୍ୟାତିର ସହ ଜଗନ୍ନାଥ କ୍ଲବରେ ଅଭିନୟମାନ ଦେଖାଇଲେ । ପ୍ରଥମେ ପୁରୀ ଓ କେନ୍ଦ୍ରାପଡ଼ାର କେତେକ ବାଳକ ରାସରେ ଯୋଗ ଦେଇଥିଲେ । ପରେ କେବଳ ପୁରୀସହର ଓ ମଫସଲରୁ ବାଳକମାନଙ୍କୁ ତାଲିମ ଦେଇ ରାସଦଳ ଚଳିଲା । ଏହି ଦଳର ନାମ ଥିଲା—"ରାଧାରମଣ ରାସୋତ୍ସବ" । କେତେକ କାଳପରେ ଜଣେ ମ୍ୟାନେଜରଙ୍କ କୁ-ଚକ୍ରରେ ଏ ମିଳିତ ଦଳ ଭାଙ୍ଗିଗଲା; କିନ୍ତୁ କାଳୀଚରଣ କେତେକ ପିଲାଙ୍କୁ ନେଇ ଦଳଗଢ଼ି କଟକ ଆସି ପ୍ରଥମେ ଶ୍ରୀରାମଚନ୍ଦ୍ର ଭବନରେ ଓ ପରେ ଜୈନମନ୍ଦିର ହତା ଓ କାଙ୍କାଳିଜାରରେ ଅସ୍ଥାୟୀ ମଞ୍ଚ ବାନ୍ଧି ଅଭିନୟ ପ୍ରଦର୍ଶନ

କଲେ । ପ୍ରେସ୍ ପୃଷ୍ଠାରେ ତାଙ୍କ ଭାଇଙ୍କ ତତ୍ତ୍ୱାବଧାନରେ ରହିଲା । କଟକର ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ, ବ୍ରଜସୁନ୍ଦର ଦାସ, ଶଶିଭୂଷଣ ରାୟ ଓ ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ତାଙ୍କୁ ଉତ୍ସାହିତ କଲେ । ପ୍ରହରାଜେ ଓ ବ୍ରଜସୁନ୍ଦର ବାବୁ ସେତେବେଳେ ସାକ୍ଷୀଗୋପାଳ ମନ୍ଦିରର ଟ୍ରଷ୍ଟି କମିଟିରେ ଥାଆନ୍ତି । ତାଙ୍କ ଯତ୍ନରେ ମନ୍ଦିର ପକ୍ଷରୁ କିଛି ସାହାଯ୍ୟ ମିଳିଲା । ଅଁଳାନବମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ମନ୍ଦିର ସମ୍ମୁଖରେ ଷ୍ଟେଜ୍-ବାନ୍ଧି ରାସନାଟ୍ୟ ପ୍ରଦର୍ଶିତ ହେଲା । ଦଳର ନାମ ହେଲା 'ସାକ୍ଷୀଗୋପାଳ ନାଟ୍ୟସଙ୍ଘ' । କାଳୀଚରଣଙ୍କ ରାସଦଳ ଚଳୁଥିବା କାଳରେ ମୋହନ ଗୋସ୍ୱାମୀଙ୍କ ଦଳ ଚାଲୁ ରହିଥାଏ । ଉଭୟ ଦଳ ରାଧାକୃଷ୍ଣଲୀଳା ପ୍ରଦର୍ଶନ କରୁଥିଲେ । ମାତ୍ର ମୋହନ ଗୋସ୍ୱାମୀଙ୍କ ଦଳର ରାସ ଲେଖାରେ ଭାଷାର ମାନ ଉଚ୍ଚ ନ ଥିଲା । ବଚନିକା ଅପେକ୍ଷା ଗୀତ ବେଶି ଥିଲା । ଗୀତଗୁଡ଼ିକ ପୁରାତନ ଲୀଳା ଗୀତ ଧରଣର ଥିଲା । କାଳୀଚରଣଙ୍କ ରାସରେ ନାଟକୀୟ ଧର୍ମ ହିସାବରେ ବଚନିକା ସଂଯୋଗ, ଗୀତଗୁଡ଼ିକର ରଚନା ଭାବ, ରସ ଅନୁଯାୟୀ ଏବଂ ନୃତ୍ୟ ଓ ଅଭିନୟ ଉନ୍ନତ ଧରଣର ଥିବାରୁ ଲୋକରେ ସମଧିକ ସମାଦର ପାଇଥିଲା ।

କିଶୋର ଚନ୍ଦ୍ରାନନ ଚମ୍ପୂର ମାତ୍ର କେତେଗୋଟି ଗୀତ ସାଧାରଣରେ ଗାୟକମାନେ ଗାଉଥିଲେ । ଚମ୍ପୂ ଯେ ଗୋଟିଏ ଗୀତି-ନାଟକ, ଏହା ଲୋକରେ ବିଦିତ ନ ଥିଲା । କାଳୀଚରଣ ଅନ୍ୟାନ୍ୟ ରାସ ବହି ଲେଖି ଅଭିନୟ ଦେବା ସଙ୍ଗେ ସଙ୍ଗେ ଚମ୍ପୂର ସମସ୍ତ ଗୀତ କ୍ରମରକ୍ଷି ନାଟକ-ରୂପେ ପ୍ରଥମେ ୧୯୩୨ ମସିହାରେ ପରିବେଷଣ କଲେ । ଏହି ନାଟକରେ ସେ ଓଡ଼ିଶାର ପୁରପଲ୍ଲୀରୁ ଯଥେଷ୍ଟ ସୁଖ୍ୟାତି ଅର୍ଜନ କଲେ । ନାଟ୍ୟସଙ୍ଘ ଓଡ଼ିଶାର ବିଭିନ୍ନ ସ୍ଥାନରୁ ନିମନ୍ତ୍ରଣ ପାଇଲା । ରାଜାମାନେ ପ୍ରୋତ୍ସାହିତ କଲେ । ଘରେ ଘରେ ଚମ୍ପୂର ଗୀତଗୁଡ଼ିକ ପ୍ରଚାରିତ ହେଲା । 'ପ୍ରୀତି-ସୁଧାକର' ତାଙ୍କର ଅନ୍ୟତମ ରଚନା । ପୁରାତନ କବିମାନଙ୍କର ସଙ୍ଗୀତକୁ ଖଞ୍ଜି ଏହି ନାଟକଟି ରଚିତ । ସୁଧୀବୃନ୍ଦଙ୍କର ସ୍ନେହସମ୍ମାନ ପାଇ କାଳୀଚରଣ ଆଉ ଗୋଟିଏ ଦୁରୂହ ଗ୍ରନ୍ଥ ଗୀତଗୋବିନ୍ଦର ସ୍ୱରଛନ୍ଦ ଓ ଗୁରୁଲଘୁ ନିୟମ ରକ୍ଷାକରି ଓଡ଼ିଆରେ ଗୀତରଚନା କଲେ । ୧୯୩୩ ମସିହାରେ ଦଳ ସହିତ ଭଦ୍ରକରେ ଥିଲାବେଳେ ଏ ଗୀତରଚନା ସମ୍ପୂର୍ଣ୍ଣ ହେଲା । ( ଗୀତ ଗୋବିନ୍ଦ ପ୍ରକାଶନ ଦ୍ରଷ୍ଟବ୍ୟ )

ଏହାକୁ କାଳୀଚରଣ ଗୀତର କ୍ରମ ରକ୍ଷା କରି ନାଟ୍ୟରୂପ ଦେଲେ । ୧୯୩୬ ସାଲରେ ଉତ୍କଳସାହିତ୍ୟ ସମାଜ ଗୀତଗୋବିନ୍ଦ ନାଟକକୁ ସର୍ବଶ୍ରେଷ୍ଠ ନାଟକରୂପେ ପୁରସ୍କୃତ କଲେ ।

ଏହାପରେ ସ୍ୱର୍ଗତ ପ୍ରହରାଜଙ୍କ ହତାମଧ୍ୟରେ ମଞ୍ଚ ବାନ୍ଧି ନାଟ୍ୟାଭିନୟ ପ୍ରଦର୍ଶିତ ହେଲା । ଏହିଠାରେ କାଳୀଚରଣ ସାକ୍ଷୀଗୋପାଳଙ୍କ ନାମରେ ଲକ୍ଷ୍ମୀମୂର୍ତ୍ତି ପ୍ରତିଷ୍ଠାର ଇତିହାସକୁ ଲୋକମତ ନାଟ୍ୟରୂପ ଦେଇ ପ୍ରଦର୍ଶନ କରାଇଲେ । ଏହା ଅତ୍ୟନ୍ତ ଲୋକପ୍ରିୟ ହେବାରୁ କାଳୀଚରଣ ସବୁରି ପ୍ରଶଂସାଭାଜନ ହେଲେ । ଓଡ଼ିଶାର ପୁରପଲ୍ଲୀରେ ତାଙ୍କ ଦଳ ଆଦୃତ ହେଲା ।

ଲକ୍ଷ୍ମୀନାଟକର ଅଧିକାଂଶ ସ୍ଥଳ ଅମିତାକ୍ଷର ଛନ୍ଦରେ ରଚିତ । କ୍ରମେ ଆଉ ଦୁଇଖଣ୍ଡି ନାଟକ ଲେଖିଲାପରେ ହଠାତ୍ ତାଙ୍କ ଲେଖାର ଦିଗ ପରିବର୍ତ୍ତିତ ହେଲା । ଏତେବେଳକୁ ତାଙ୍କ ରାସ ନାଟ୍ୟର ଲେଖାଗୁଡ଼ିକ ହେଲା—ବନବିହାର, କୌତୁକଚିନ୍ତାମଣି, ବିଦ୍ୟାବଳୀ, ପ୍ରୀତିସୁଧାକର, କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ, ବାଂଶରୀ ବିଳାସ, ଶ୍ରୀ ଗୀତଗୋବିନ୍ଦ, ଆଖିର ଦେଖା ଓ ଲକ୍ଷ୍ମୀ । କାଳୀଚରଣ ବାଙ୍କାବଜାର ଗଳି ମଧ୍ୟରେ ଗୋଟିଏ ମଞ୍ଚବାନ୍ଧି ଅଭିନୟ ଦେଖାଉଥାନ୍ତି । ଏହିଠାରେ ହଠାତ୍ 'ପ୍ରତିଶୋଧ' ନାମକ ଖଣ୍ଡିଏ ସାମାଜିକ ନାଟକ ଲେଖି ପରିବେଷଣ କଲେ । ଏହା ମଧ୍ୟ ଲୋକ ଆଦରରେ ଗ୍ରହଣ କଲେ । ୧୯୩୯ରେ ରାସଦଳ ଭାଙ୍ଗିଲା । ପୂର୍ବରୁ ସଙ୍ଗୀତପ୍ରଭା ପ୍ରେସ୍ ଆଣି ଜଗନ୍ନାଥବଲ୍ଲଭ ବସାରେ ରଖି କେତେକ କାମ କରାଗଲା । ପ୍ରେସ୍ ଆସୂରେ ଚଳିବା ମୂଳହେଲା । ଏତିକବେଳେ Orissa Theatresର ପରିକଳ୍ପନା । ପୁରୁଷ ଓ ସ୍ତ୍ରୀ ଘେନି ଦଳ ଆରମ୍ଭ କରିବାର ଇଚ୍ଛା ହେଲା । ରାସ ଦଳରେ ଶେଷଆଡ଼କୁ ସେ କେତେକ ବାଳିକାଙ୍କୁ ଯୋଗ କରାଇଥିଲେ । ସେଇ ସଂଯୋଗ ତାଙ୍କୁ ଏ ଅଭିନେତା ଓ ଅଭିନେତ୍ରୀ ଘେନି ଥିଏଟର ଗଢ଼ିବା ମତଲବ ଚେତାଇଲା ।

## ଓଡ଼ିଶା ଥିଏଟର୍ସ

ଏହିଠାରୁ ଓଡ଼ିଶା ଥିଏଟର୍ସ ଆରମ୍ଭ । ଅଭିନେତା ଓ ଅଭିନେତ୍ରୀ ଗୋଟି ଗୋଟି କରି ଜଣେ ଜଣେ ଜୁଟିଲେ । କେହି କିନ୍ତୁ ମଞ୍ଚର ଅଭିନେତା ବା ଅଭିନେତ୍ରୀ ନୁହନ୍ତି । ଯେଉଁମାନେ ଜୁଟିଲେ ସମସ୍ତଙ୍କୁ ମଞ୍ଚଶିଳ୍ପୀ ଗଢ଼ିବାକୁ ପଡ଼ିଲା । କେତେକ ଝିଅମାନଙ୍କୁ ତାଳ ମାଡ଼ନ

କରାଇ ଗୀତ ଶିଖାଇଲେ ଓ ନୃତ୍ୟ ଶିଖାଇଲେ । ଜଣେ କେତେ ଅପାଠୁଆ, ଅପାଠୋଇ ଥିଲେ—ତାଙ୍କୁ ରୋଜ ପାଠ ପଢ଼ାନ୍ତି, ଅଭିନୟ ଶିଖାନ୍ତି—ଗୀତ ଶିଖାନ୍ତି, ନାଚ ଶିଖାନ୍ତି ।'ଆହୁତି'ନାଟକ ଶିଖା ଚାଲିଥାଏ—ଡୋମପଡ଼ା ରାଜା ଡାକିଲେ । କାଳିକାପ୍ରସାଦରେ ଆହୁତି ଅଭିନୀତ ହେଲା ଓ କିଛି ଟଙ୍କା ମିଳିଲା । କଟକ ଫେରି 'ଗାର୍ଲସ୍କୁଲ' ଲେଖି ଅଭିନୟ, ଗୀତ ଇତ୍ୟାଦି ଶିଖାଇଲେ । ଏତିକିବେଳେ ଶ୍ରୀ ରାମଚନ୍ଦ୍ର-ଭବନ ବାଁ ମଠରେ ସାହିତ୍ୟ ସପ୍ତାହ ହେଲା । ସେ ସେଠି ଜୀବିତ-ତର୍ପଣ ବୋଲି ଖଣ୍ଡିଏ ପ୍ରହସନ ଲେଖି ପିଲାଙ୍କୁ ଶିଖାଇ ଅଭିନୀତ କରାଇଲେ । ଲୋକେ ପସନ୍ଦ କଲେ । ସାହିତ୍ୟ-ସମାଜର କର୍ମକର୍ତ୍ତା ଓ ଶ୍ରୀମତୀ ସରଳା ଦେବୀଙ୍କୁ ଧନ୍ୟ ସାହିତ୍ୟ ସପ୍ତାହ ମଞ୍ଚଟି ରଖାଇ ସେଇଠି ଗାର୍ଲସ୍କୁଲ ଅଭିନୀତ କରାଗଲା । ଗାର୍ଲସ୍କୁଲରେ ଦର୍ଶକ ପ୍ରତିଦିନ ଟିକଟ ନ ପାଇ ଫେରିଲେ । ଶହେଦିନ ପରପର ଅଭିନୟ ଚାଲିଲା । 'ଗାର୍ଲସ୍କୁଲ' ପରେ 'ଆହୁତି' (ସାମାଜିକ) ନାଟକ ପ୍ରାୟ ଦୁଇମାସ ଚାଲିଲା । ଏହାପରେ ପୌରାଣିକ ନାଟକ 'ଚଣ୍ଡୀ' ।

ଏହି ସମୟରେ ହଠାତ୍ ଦିନେ ରାତିରେ ଭୀଷଣ ବର୍ଷା ଓ ଝଡ଼ପରି ପବନ ହେଲା । ପେଣ୍ଡାଲଟି ଭାଙ୍ଗିପଡ଼ିଲା । ସିନ୍‌ସବୁ ଓଦା ହୋଇଗଲା । ଦୁଇମାସ ଅଭିନୟ ବନ୍ଦରହିଲା ।

ବାଙ୍କାବଜାରରେ ସେ କଣ୍ଟେଶ୍ୱର ଚମ୍ପୂ ଓ ଆଉ କେତୋଟି ନାଟକ କିଛିଦିନ ପୂର୍ବେ ସ୍ୱର୍ଗତ ରଜନୀ ବିଶ୍ୱାସଙ୍କ ଘରପାଖ, ପାଲିତଙ୍କ ପଡ଼ିଆରେ ପାଲବନ୍ଧା ମଞ୍ଚରେ ଅଭିନୀତ କରାଇଥିଲେ । ସେ ସ୍ଥାନଟି ଖାଲି ପଡ଼ିଥିଲା । ଭଡ଼ାନେଇ ସେଇଠାରେ ଚାଳଘର ପେଣ୍ଡାଲଟି ତୋଳା ହେଲା ୧୯୪୧ ସାଲରେ । ନୂଆ ପେଣ୍ଡାଲରେ ନାଟକ ଆରମ୍ଭ ହୋଇ ନ ଥାଏ । ଏତିକି ବେଳେ ଦିଲ୍ଲୀରୁ Executive Counciller Sir J. P. Srivastav କଟକ ଗସ୍ତରେ ଆସିଥାଆନ୍ତି । ତାଙ୍କୁ ଦେଖାକରି ବାଙ୍କାବଜାର ପେଣ୍ଡାଲ ତାଙ୍କଦ୍ୱାରା ଉନ୍ମୁକ୍ତ କରାଗଲା । ଏଠାରେ ପ୍ରଥମ ମଞ୍ଚବେଷଣ ହେଲା ପୁଣି ସେହି ଗାର୍ଲସ୍କୁଲ । ସେତେବେଳେ ଇଲେକ୍‌ଟ୍ରିକ୍ ନ ଥାଏ ପେଣ୍ଡାଲରେ । ଏହି ନାଟକ ଦେଖି ପାରଳା ମହାରାଜା ( ସେତେବେଳର ପ୍ରଧାନମନ୍ତ୍ରୀ) ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ହଜାରେ ଟଙ୍କା ପୁରସ୍କାର ଦେଲେ । ଗାର୍ଲସ୍କୁଲ ଏକ ସପ୍ତାହ ଚାଲିବାପରେ 'ବୃନ୍ଦାବନ' ନାଟକ ଅଭିନୀତ ହେଲା ।

ଏହାପରେ 'ପରିବର୍ତ୍ତନ' । ପରିବର୍ତ୍ତନ ମଧ୍ୟ ଗୋଟିଏ ସମାଜ ଚିତ୍ର । ଏହି ନାଟକଟି ପ୍ରାୟ ଦୁଇ ମାସ ଚାଲିଲା ।

ପରିବର୍ତ୍ତନ ପରେ ରଚିତ ହେଲା ଓଡ଼ିଆପୁଅ 'ଜୟଦେବ' ନାଟକ । ୧୯୪୩ରେ କେବଳ କଟକରେ ନୁହେଁ, ସାରା ଓଡ଼ିଶାରେ ଏ ନାଟକ ଚହଳ ପକାଇଦେଲା । କହିବାକୁ ଗଲେ ଏ ନାଟକ ଅଭିନୀତ ହେବାପରେ ଜୟଦେବ ଯେ ଓଡ଼ିଆପୁଅ ଏ କଥା ଘରେ ଘରେ ଏକ ଚେତନା ଜଗାଇ ଦେଲା । ଯେଉଁମାନେ ଜୟଦେବଙ୍କୁ ସେତେବେଳ ଯାଏ ବଙ୍ଗୀୟ ବୋଲି ଦାବୀ କରୁଥିଲେ ସେମାନେ କାଳୀବାବୁଙ୍କର ଘୋର ଶତ୍ରୁ ହୋଇଉଠିଲେ । ଏପରିକି ଅଭିନୟ ବନ୍ଦ ହେବାଭଳି ନାନା କୁ-ପ୍ରଚେଷ୍ଟା କଲେ । ଜୟଦେବ ନାଟକ ଲେଖିବା ପୂର୍ବରୁ କ୍ୟାପିଟାଲ ସିନେମାରେ ବଙ୍ଗଳା ଜୟଦେବ ଫିଲ୍ମ ପ୍ରଦର୍ଶିତ ହୋଇଥିଲା । ଏହି ଫିଲ୍ମରେ ଜୟଦେବଙ୍କୁ ବଙ୍ଗାଳୀ ବୋଲି ଏବଂ ଓଡ଼ିଆଙ୍କୁ ଅପମାନିତ ହେବାଭଳି ଚିତ୍ର କରାଯାଇଥାଏ । ଏହି ଛବି ହିଁ କାଳୀବାବୁଙ୍କୁ ଓଡ଼ିଆପୁଅ ଜୟଦେବ ନାଟକ ଲେଖିବାକୁ ପ୍ରବର୍ତ୍ତାଇଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ନାନାପ୍ରକାର କୁଚକ୍ର ମଧ୍ୟରେ ମଧ୍ୟ ଅଟଳ ରହିଲେ କାଳୀବାବୁ । ନାଟକଟି ଛଅ ମାସରୁ ଊର୍ଦ୍ଧ୍ୱ ଜନଗହଳ ମଧ୍ୟରେ ପ୍ରଦର୍ଶିତ ହେଲା । ଏହା କେତେକଙ୍କର ଅନ୍ତର୍ଦାହ ସୃଷ୍ଟି କଲା ।

ଜୟଦେବ ପରେ କାଳୀବାବୁ ମଞ୍ଚସ୍ଥ କଲେ 'ଭାତ' । ଜୟଦେବ ଅଭିନୟ ବେଳେ ଭାତ ଲେଖାଯାଇ ଶିକ୍ଷାଦାନ ଚାଲିଥାଏ । ଥରେ କେହି ସମଧର୍ମୀ ଭାତ ନାଟକରେ ତଦାନୀନ୍ତନ ବ୍ରିଟିଶ ସରକାରଙ୍କର ବିରୋଧ ପ୍ରଚୁର ଭାବ ରଚିତ ହୋଇଛି ବୋଲି ସରକାରଙ୍କୁ ଲେଖିଲେ । ଫଳରେ ଭାତ ଅଭିନୟ ନିମିତ୍ତ ପୁଲିସ୍ ଲାଇସେନ୍ସ ପାଇଁ ଦରଖାସ୍ତ ଦେବାବେଳେ ଅଭିନୟର ଅନୁମତି ମିଳିଲା ନାହିଁ । ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜ ନିଜେ ଯାଇ ଲାଟସାହେବଙ୍କୁ ସାକ୍ଷାତ କରି ଏହା ଜଣାଇଲେ । କଥାହେଲା ସରକାରଙ୍କ ପକ୍ଷରୁ ରିହର୍ସେଲ୍ ଦେଖିବା ପରେ ନିଷ୍ପତ୍ତି ଗ୍ରହଣ କରାଯିବ । ପ୍ରହରାଜ, ଶଶିଭୂଷଣ ରାୟ, ବ୍ରଜସୁନ୍ଦର ଦାସ, ଭଗବତୀ ଚରଣ ପାଣିଗ୍ରାହୀ ଓ ଲକ୍ଷ୍ମୀନାରାୟଣ ସାହୁ ଏମାନେ ଯାଇ ରିହର୍ସେଲ ଦେଖି ସରକାରଙ୍କ ପକ୍ଷରୁ ରିହର୍ସେଲ୍ ଦେଖିବା ବେଳେ ଗୋଟିଏ ଗୀତ

ନାଟକରୁ ବାଦଦେବାକୁ ପରାମର୍ଶ ଦେଲେ । ଗୀତଟିର ପ୍ରଥମଧାଡ଼ି ହେଉଛି :—

'ମରଣର ଚିତା ମନ୍ଥନ କରି ଅକାଳ ମଡ଼ାଏ ଉଠରେ ଚେଇଁ'

× × ×

ସର୍କାରଙ୍କ ପକ୍ଷରୁ ଲାଟସାହେବଙ୍କ ସେକ୍ରେଟାରୀ, କମିଶନର, ପୋଲିସ ସାହେବ ଇତ୍ୟାଦି କେତେଜଣ ଅଫିସ୍ରୁ ଦିନ ରାତିରେ ରିହର୍ସେଲ୍ ଦେଖି ବାକୁ ଆସିଲେ । ପ୍ରହରାଜେ ଓ ଅନ୍ୟାନ୍ୟମାନେ ମଧ୍ୟ ଉପସ୍ଥିତ ହେଲେ । ପ୍ରହରାଜେ ନାଟକଟିର ଦୃଶ୍ୟମାନ ଇଂରାଜୀରେ ବୁଝାଇ ଦେଉଥାଆନ୍ତି । ପୂର୍ବର ପରାମର୍ଶ ଅନୁସାରେ ଗୀତଟି ଉଠାଇ ଦିଆଯାଇଥାଏ । ସରକାରୀ ପ୍ରେକ୍ଷକଦଳ ନାଟକର ଅଭିନୟ ପ୍ରଦର୍ଶନ ସପକ୍ଷରେ ମତ ଦେଲେ । ଜୟଦେବ ପରେ 'ହରଣଚୂଳ' ପ୍ରଭୃତି କେତେକ ସାମାଜିକ ନାଟକ ଲେଖିବା ପରେ ଭାତ ନାଟକର ଅଭିନୟ ପ୍ରଦର୍ଶିତ ହେଲା ।

'ଅଭିଯାନ' କାଳୀବାବୁଙ୍କ ଏକ ଗୌରବ ଅଭିଯାନ । ଏହି ବିଷୟବସ୍ତୁ ଯେଉଁ ରାମଶଙ୍କରଙ୍କର କାଞ୍ଚିକାବେରୀ, ଗୋଦାବରୀଶଙ୍କର ପୁରୁଷୋତ୍ତମଦେବ, ଭିକାରୀବାବୁଙ୍କର ରାଜାପୁରୁଷୋତ୍ତମ ନାଟକ ତିନୋଟି ଲେଖାହେବାପରେ କାଳୀବାବୁ ଅଭିଯାନ ନାଟକ ଲେଖିବାକୁ ସାହସ କଲେ । ତାଙ୍କ ଜୀବନୀ ଆଲୋଚନା କଲେ ଦେଖାଯିବ ଯେ ସେ ନୂଆ କିଛି ପରଖିବାକୁ ସର୍ବଦା ସଚେଷ୍ଟ । ଅଭିଯାନ ନାଟକ ଅନେକ ଅଭିନବ ତଥ୍ୟ ଯେଉଁ ରଚିତ । ପ୍ରତି ନାଟକରେ କାଳୀବାବୁ ଦେଶାତ୍ମବୋଧ, ଜାତୀୟତା ଓ ଆତ୍ମଚେତନାର ବାଣୀ ଶୁଣାଇଛନ୍ତି । ଅଭିଯାନରେ ସେ ପଦ୍ମାବତୀଙ୍କ ମୁଖରେ କୁହାଇଛନ୍ତି :—

"ଭିଖ ମାଗି କେହି କେବେ ବଡ଼ ହୋଇନାହିଁ । ହୋଇଚି-ଦାବୀକର, ବିଦ୍ରୋହକର, ବିପ୍ଳବ କର" ।

ନାଟକର ନାନାସ୍ଥାନରେ ଏହିପରି ବହୁ ଦେଶାତ୍ମବୋଧକ ବଚନକା ଦର୍ଶକଙ୍କୁ ତତାଇ ମତାଇ ରଖିଥିଲା । ଓଡ଼ିଶାରେ ରାମଗିରି ପର୍ବତର ଶୋଭା ସଂଦର୍ଶନରେ ମୁଗ୍ଧ ମହାକବି କାଳୀଦାସ ଓଡ଼ିଆ କୃଷ୍ଟି

ଅନୁପ୍ରାଣିତ ହୋଇ 'ଋତୁସଂହାର' ଲେଖିଥିବା କଥା ଅଭିଯାନ ନାଟକରେ ସର୍ବପ୍ରଥମ କାଳୀବାବୁ ପ୍ରକାଶକର ଦାୟୀବାଡ଼ିଛନ୍ତି ।

କାଳୀବାବୁଙ୍କର ଆଉ ଖଣ୍ଡିଏ ନାଟକ 'ଅନ୍ତର୍ବର୍ତ୍ତୀ ଜଗନ୍ନାଥ ଦାଶ' । ନାଟକ ଲେଖା, ଶିକ୍ଷା ଓ ଅଭିନୟ ମୂଳରେ ଏକ ବିଶେଷ ଘଟଣା ରହିଛି । ଏହି ସମୟରେ କାଳୀବାବୁଙ୍କ ହାତଗଢ଼ା କେତେଜଣ ଅଭିନେତା ଓ ଅଭିନେତ୍ରୀ ନିଜକୁ ଓଡ଼ିଶା ଥିଏଟରର ଅପରିହାର୍ଯ୍ୟ ଶିଳ୍ପୀ-ମଣି ନାନା ବିଭ୍ରାଟ ଘଟାଇ ଦଳତ୍ୟାଗ କରି ଅନ୍ୟ ଏକ ନୂଆ ଘର ଖୋଲାରେ ଯୋଗ ଦେଲେ । ସେମାନଙ୍କର ପୁଣି ଆସିବାର ସୂଚନା ନ ଦେଖି, କାଳୀବାବୁ ବସ୍ତୁ କଳ୍ପନା କରି ଅନ୍ତର୍ବର୍ତ୍ତୀ ଜଗନ୍ନାଥ ଦାଶ ନାଟକ ଲେଖିଲେ । କାଳୀବାବୁ ଜଗନ୍ନାଥ ଦାଶ ନାଟକର ପ୍ରଧାନ ଭୂମିକା-ମାନଙ୍କରେ ପ୍ରଥମଥର ପାଇଁ ନାରୀଙ୍କୁ ପୁରୁଷ ସଜାଇ ଅବତୀର୍ଣ୍ଣ କରାଇଲେ । ନାଟକଟି ସର୍ବାଙ୍ଗସୁନ୍ଦର ହେଲା ଏବଂ ସଗୌରବେ ତିନିମାସ ଜନଗହଳରେ ଚାଲିଲା । ଜୟଦେବ ପରେ ଏହା ଏକ ଜାତିପ୍ରୀତିଦ୍ୟୋତକ ନାଟକ । ଏହା ସମସ୍ତେ ସ୍ୱୀକାର କଲେ । ଜଗନ୍ନାଥ ଦାଶ ପରେ ଆଉ କେତେ ଖଣ୍ଡି ନାଟକ ଲେଖି ମଞ୍ଚସ୍ଥ କରାଯାଇଅଛି । ସେଥିମଧ୍ୟରୁ କେତେଗୋଟି ପ୍ରଖ୍ୟାତ ନାଟକ ହେଲା 'ରକ୍ତମାଟି','ବେକାର','ଫଟାଭୂଇଁ' ଇତ୍ୟାଦି । ତାଙ୍କର ଓଡ଼ିଶା ଥିଏଟରର ଶେଷନାଟକ ରଚିତ ଓ ପରିବେଷିତ ହେଲା 'ଫଟାଭୂଇଁ' ୧୯୪୮ । ୪୯ ସାଲରେ । ଏହାହିଁ ଓଡ଼ିଶା ଥିଏଟରର ଶେଷ ନାଟକ । ଦଶବର୍ଷ ଲାଗି ସ୍ଥାନଟି ନିଆହୋଇଥିଲା । ଯୋଗକୁ ସେହି ସମୟରେ ବର୍ଷା ପବନରେ ଘର ଭାଙ୍ଗିଗଲା । ଜୟଦେବ ଅଭିନୟ କାଳରୁ କେତେକ ଉଚ୍ଚପଦର ବ୍ୟକ୍ତି ଓଡ଼ିଶା ଥିଏଟରର ପତନକୁ ଚାହିଁ ବସିଥିଲେ । ଏଣୁପରେ ନାନା କୁଚକ୍ର ମଧ୍ୟରେ ଆଉ ଘର ଖୋଲିବାର ସୁଯୋଗ ମିଳିଲା ନାହିଁ ।

ଦୁର୍ଯୋଗକୁ ଏହି ସମୟରେ କାଳୀବାବୁ ରକ୍ତଚାପ ରୋଗରେ ପୀଡ଼ିତ ହେଲେ । ତାଙ୍କର ସ୍ନେହମୟୀ ଗୁନ୍ଦଗୀତ ପ୍ରବୀଣା ମାତାଙ୍କର ୧୯୫୦ ଡିସେମ୍ବର ମାସରେ କାଳ ହେଲା । କାଳୀବାବୁ ଭାଙ୍ଗି ପଡ଼ିଲେ । ପେଣ୍ଡାଲ ପାଇଁ ସ୍ଥାନ ମିଳିଲା ନାହିଁ । ନାନା ଅସୁବିଧା ମଧ୍ୟରେ ଓଡ଼ିଶା ଥିଏଟର ଇତି ହେଲା ।

# ପରବର୍ତ୍ତୀ ଜୀବନ

୧୯୪୮ ରେ ଓଡ଼ିଶା ପ୍ରସ୍ତୁତ ବିଭାଗର ପ୍ରଥମ ଗ୍ରାମଫୋନ ରେକର୍ଡ ଓ ପ୍ରଥମ ଚଳଚ୍ଚିତ୍ର (ନିର୍ବନ୍ଧ ଓ ଜନ୍ମମାଟି) କାଳୀବାବୁ ପ୍ରସ୍ତୁତ କରାଇଥିଲେ । କାଳୀବାବୁ କଲିକତା ବେତାର କେନ୍ଦ୍ରର କଣ୍ଠଶିଳ୍ପୀଭାବେ ଗୃହୀତ ହୋଇଥିଲେ ୧୯୪୭ । ୪୮ ରେ । କଟକରେ ପ୍ରଥମ ବେତାର-କେନ୍ଦ୍ର ପ୍ରତିଷ୍ଠାରେ ସହଯୋଗଲାଗି କଲିକତାରୁ କର୍ମକର୍ତ୍ତାମାନେ ଆସି କାଳୀବାବୁଙ୍କର ସହଯୋଗ ଲୋଡ଼ିଲେ ଏବଂ ତାଙ୍କ ଓଡ଼ିଶା ଥିଏଟର୍ସରୁ ଯନ୍ତ୍ର ଓ କଣ୍ଠଶିଳ୍ପୀମାନଙ୍କୁ ଯୋଗାଇ କାଳୀବାବୁ ସକ୍ରିୟ ସାହାଯ୍ୟ ଦେଲେ ଏବଂ ପ୍ରୋଗ୍ରାମରେ 'ଓଡ଼ିଶୀ' ସଙ୍ଗୀତକୁ ସ୍ଥାନ ଦିଆଇଲେ । ଆକାଶବାଣୀର ପ୍ରଥମ ଯନ୍ତ୍ର ଓ କଣ୍ଠଶିଳ୍ପୀ ମନୋନୟନରେ କାଳୀବାବୁ ବିଚାରକ ଥିଲେ । ଅନ୍ୟତମ ବିଚାରକ ଥିଲେ ସ୍ୱର୍ଗତ ବୈଷ୍ଣବ ଚରଣ ଦାସ (I.G) । ଓଡ଼ିଶାରେ ପ୍ରଥମେ ସିନେମାକମ୍ପାନି ଓଡ଼ିଶା-ଥିଏଟର୍ସ ଲିମିଟେଡ୍ ତାଙ୍କର ଆୟୋଜନରେ ସ୍ଥାପିତ ହେଲା ୧୯୪୮ରେ; କିନ୍ତୁ କେତେକ ଅଂଶଗ୍ରହୀତାଙ୍କ ଅସହଯୋଗ ହେତୁ ତାହା କୃତକାର୍ଯ୍ୟ ହୋଇ ପାରିଲା ନାହିଁ ।

ଓଡ଼ିଶା ଥିଏଟର୍ସ ଭାଙ୍ଗିଯିବାପରେ କାଳୀବାବୁ 'ସୁରଲେଖା' ନାମ ଦେଇ ରେକର୍ଡ଼ ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ କରି ଅନେକ ଗୁଡ଼ିଏ ରେକର୍ଡ଼ ପ୍ରସ୍ତୁତ କରିଛନ୍ତି । ଅବଧି ଏହି କମ୍ପାନି କଲିକତାର ହିନ୍ଦୁସ୍ଥାନ ରେକର୍ଡ କମ୍ପାନିର ସହଯୋଗରେ ଚାଲୁ ରହିଛି ।

୧୯୫୧ ଠାରୁ କାଳୀବାବୁ ପାଠ୍ୟପୁସ୍ତକ ଲେଖାରେ ମନ ବଳାଇଲେ । ଏହି କାଳରେ ମଧ ସେ ତିନ ଚାରିଖଣ୍ଡି ନାଟକ ଲେଖିଛନ୍ତି । ସେଥିମଧ୍ୟରୁ ବାଙ୍କୀର ମହାରାଣୀ ଶୁକଦେଈଙ୍କ ଵୀରତ୍ୱ କାହାଣୀ କଥାବସ୍ତୁ ହେଉ"ରକ୍ତମନ୍ଦାର", ଶୁଦ୍ରମୁନି 'ଶାରଳାଦାସ', 'ଯୁଗେ ଯୁଗେ ଉତ୍କଳ' ଓ ନରସିଂହପୁରର ମହାନାରୀ 'ମାଳତୀ' ବିଷୟବସ୍ତୁ ହେଉ ନାଟକମାନ ରଚନା କଲେ । ଦେଶ-ଜାତି-ପ୍ରୀତି ତାଙ୍କର ଲେଖାରେ ସର୍ବଦା ଜାଗ୍ରତ ।

କାଳୀବାବୁ ପୁଣିଥରେ ରଙ୍ଗମଞ୍ଚ ତୋଳାଇବାର ବିଶେଷ ପ୍ରଚେଷ୍ଟା କରୁଥିବା ବେଳେ ଦୈବ ପ୍ରତିକୂଳ ହେଲା । ଦିନେ ଗୋଟିଏ ଆଦିବାସୀ

ସଙ୍ଘରେ ଯୋଗ ଦେବାଲାଗି ଭୁବନେଶ୍ୱର ଯିବା ବାଟରେ ମଟର-ଦୁର୍ଘଟଣା ଘଟିଲା । ଏହା ତା ୨୫ । ୫ । ୫୯ରେ ଘଟଣା । ଏ ଦୁର୍ଘଟଣାରେ କାଳୀବାବୁଙ୍କ ଜୀବନର ଆଶା ନ ଥିଲା । ପ୍ରାୟ ୫ ମାସ କାଳ ଡାକ୍ତରଖାନାରେ ଚିକିତ୍ସିତ ହେବାପରେ ଘରକୁ ଫେରି ଏକବର୍ଷରୁ ଉର୍ଦ୍ଧ୍ୱ କାଳ ସେ ଏକାବେଳେ ଶଯ୍ୟାଶାୟୀ ହୋଇ ରହିଲେ । ଏହି ସମୟରେ ଥରେ ଶ୍ରୀମତୀ କମଳାଦେବୀ ଚଟ୍ଟୋପାଧ୍ୟାୟ କଟକ ଆସିଥିଲେ। ସେ କାଳୀବାବୁଙ୍କୁ ସାକ୍ଷାତ କରିବାକୁ ଆସି ଓଡ଼ିଶାରେ ନାଟକ ସଂଘ ପ୍ରତିଷ୍ଠା ପାଇଁ ତାଙ୍କୁ କହିଲେ । ପରେ ପରେ 'ଉତ୍କଳ ନାଟ୍ୟସଂଘ' କାଳୀବାବୁଙ୍କ ସଭାପତିତ୍ୱରେ ପ୍ରତିଷ୍ଠିତ ହେଲା । ନୃତ୍ୟବିତ୍ ଶ୍ରୀ ବିନୋଦ ଚୌଧୁରୀ, ସଂଗୀତ ନୃତ୍ୟ ଗ୍ରନ୍ଥ ପ୍ରଣେତା ଶ୍ରୀ ପ୍ରଜେଶ ବାନର୍ଜୀ ଓ କେତେଜଣ ନୃତ୍ୟ ଶିଳ୍ପୀଙ୍କୁ କଟକ ଆଣାଇ ମହାସମାରୋହରେ ଉତ୍କଳ ନାଟ୍ୟ ସଂଘର ବାର୍ଷିକ ଉତ୍ସବ ପ୍ରତିପାଳିତ ହେଲା । କେତେକ ବିଶେଷ କାରଣରୁ କାଳୀବାବୁ ପ୍ରାୟ ତିନବର୍ଷ ପରେ ସଂଘରୁ ନିଜକୁ ଅଲଗା କରିନେଲେ ।

କାଳୀବାବୁ ଚଳପ୍ରଚଳନରେ ଅସମର୍ଥ ହୋଇ ପଡ଼ି ରଙ୍ଗମଞ୍ଚ ପୁନର୍ନିର୍ମାଣର କଳ୍ପନା ମନରୁ ଛାଡ଼ିଦେଲେ ।

ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ବୋଲି ସ୍ୱୀକୃତି ଆଣାଇବାକୁ କାଳୀବାବୁ ସର୍ବପ୍ରଥମେ ମାନ୍ଦ୍ରାଜ ଓ ଦିଲ୍ଲୀରେ ଦୃଢ଼ ପ୍ରମାଣ ଉପସ୍ଥାପିତ କରି ଦୀର୍ଘ ସନ୍ଦର୍ଭମାନ ଲେଖିଥିଲେ । ବହୁ ବାଧାବିଘ୍ନ ସତ୍ତ୍ୱେ ପରେ ଓଡ଼ିଶୀନୃତ୍ୟ ଭାରତର ଶାସ୍ତ୍ରୀୟ ନୃତ୍ୟରୂପେ ସ୍ୱୀକୃତି ଲାଭକଲା । ୧୯୭୦ରେ କାଳୀବାବୁଙ୍କ ଜୟନ୍ତୀବେଳେ ଡା: ନୃସିଂହ ଚରଣ ସାମନ୍ତ-ସିଂହାରଙ୍କର 'ମୋ କାଳୀଭାଇ' ପୁସ୍ତିକାରେ ଏ ସମ୍ବନ୍ଧରେ ବହୁତଥ୍ୟ ପ୍ରକାଶ ପାଇଛି ।

କାଳୀବାବୁ ଗୀତଗୋବିନ୍ଦର ଜଣେ ବିଶିଷ୍ଟ ଭକ୍ତ । ଗୀତଗୋବିନ୍ଦର ମୂଳ ସ୍ୱର, ଛନ୍ଦ ଓ ତାଳ ରକ୍ଷାକରି ତାହାର ଭାଷାନୁବାଦ କେବଳ ଓଡ଼ିଶାରେ ନୁହେଁ, ଏଭଳି ଅନୁବାଦ ଭାରତରେ ଅବଧି ସମ୍ଭବ ହୋଇ ନାହିଁ । ତିନବର୍ଷ ପୂର୍ବେ ଦିଲ୍ଲୀରେ ଜୟଦେବ ସମାରୋହ ଅନୁଷ୍ଠାନରେ ଭାରତର ବିଭିନ୍ନ ପ୍ରଦେଶରୁ ଉପସ୍ଥିତ ପଣ୍ଡିତମଣ୍ଡଳୀଙ୍କ ଦ୍ୱାରା କାଳୀବାବୁ ସଭାପତି ରୂପେ ମନୋନୀତ ହୋଇଥିଲେ । ଏଠାରେ ସେ ଜୟଦେବଙ୍କ

ଉତ୍କଳୀୟତ୍ୱର ଯେଉଁ ଅକାଟ୍ୟ ପ୍ରମାଣମାନ ଉପସ୍ଥାପିତ କରି ପ୍ରଶଂସିତ ହୋଇ ଅଛନ୍ତି । ତାଙ୍କର ଗୀତଗୋବିନ୍ଦର ଉତ୍କଳାନୁବାଦ ସେଠାରେ ଶ୍ରୋତାମାନଙ୍କୁ ଚମତ୍କୃତ କରାଇପାରିଛି । ଗୀତଗୁଡ଼ିକ ସୁକଣ୍ଠ ଗାୟକ ଶ୍ରୀ ବାଳକୃଷ୍ଣ ଦାଶଙ୍କ ଦ୍ୱାରା ପରିବେଷିତ ହୋଇଥିଲା ।

ଏହା ପରେ ୧୯୭୮ରେ ଦିଲ୍ଲୀର ସଙ୍ଗୀତ ନାଟକ ଏକାଡେମୀ ତାଙ୍କର ସଙ୍ଗୀତ-ନୃତ୍ୟ-ନାଟ୍ୟର କୃତିତ୍ୱ ଉପଲବ୍ଧି କରି ତାଙ୍କୁ 'ରତ୍ନସଦସ୍ୟ' ବା 'ଫେଲୋ' ରୂପେ ସମ୍ମାନିତ କରିଛନ୍ତି ।

ଉତ୍କଳ ଇଉନିଭରସିଟି ସ୍ଥାପିତ ହେବାପରେ ସ୍ୱର୍ଗତ ରାୟବାହାଦୁର ଚନ୍ଦ୍ରମଣି ଆଚାର୍ଯ୍ୟ ଭାଇସ୍ ଚାନ୍ସେଲର୍‌ର ଥିବାକାଳରେ କାଳୀବାବୁ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ସଙ୍ଗୀତକୁ Supplementary Subject ରୂପେ ଗୃହୀତ କରାଇଛନ୍ତି ଓ ସେହି ସମୟରୁ ସେ ସେକେଣ୍ଡାରୀ ବୋର୍ଡ୍‌ର ସଙ୍ଗୀତ ବିଭାଗର ପ୍ରଶ୍ନକର୍ତ୍ତା ଓ ପରୀକ୍ଷକ ରୂପେ ରହିଛନ୍ତି ।

ଓଡ଼ିଶାର ସଙ୍ଗୀତ ନାଟକ ଏକାଡେମୀର ପ୍ରତିଷ୍ଠାକାଳରୁ ସେ ଏହାର କାର୍ଯ୍ୟକାରୀ ସଭାର ବରିଷ୍ଠ ସଭ୍ୟରୂପେ ରହିଆସିଛନ୍ତି ଏବଂ ଏହି ଏକାଡେମୀର ଉପ-ସଭାପତି ରୂପେ ଗତ ମାର୍ଚ୍ଚମାସ ପର୍ଯ୍ୟନ୍ତ ରହିଆସିଥିଲେ । ସରକାର ଏକାଡେମୀର Constitution ବଦଳାଇବା ପରେ ତାଙ୍କୁ ପୁଣି କାର୍ଯ୍ୟକାରୀ ସମିତିର ସଭ୍ୟରୂପେ ଗ୍ରହଣ କରିଛନ୍ତି ।

ସଙ୍ଗୀତ ରଚନାଦିଗରେ କାଳୀବାବୁଙ୍କ ପ୍ରତିଭା ସର୍ବଥା ପ୍ରଶଂସନୀୟ । ତାଙ୍କର ଓଡ଼ିଶୀ, ଆଧୁନିକ, କୀର୍ତ୍ତନ, ଭଜନ, କୀର୍ତ୍ତନ ଓ ପଲ୍ଲୀସ୍ୱର ଗୀତର ସଂଖ୍ୟା ଦୁଇସହସ୍ରରୁ ଅଧିକ ହେବ । ବିବିଧ ବିଭାଗୀୟ ରଚନାଗୁଡ଼ିକର ବିଶେଷତ୍ୱ ହେଉଛି ଯେ କାଳୀବାବୁ ସେଥିରେ ତାଙ୍କର ସ୍ୱଭାବ ସୁଲଭ ରସଭାବ ଓ ସ୍ୱର ଯୋଗାଡ଼ିବା ସହିତ ଓଡ଼ିଆ ଶବ୍ଦମାନଙ୍କର ଯେପରି ପ୍ରୟୋଗ କରିଛନ୍ତି ତାହା ପ୍ରାୟ ବିରଳ ।

ଏହାଛଡ଼ା ଛାନ୍ଦ, ପାଲା, ଦାସକାଠିଆ ଓ ଦେଶାତ୍ମବୋଧକ ସଙ୍ଗୀତ ଆଦି ଦିଗରେ କାଳୀବାବୁ ଲେଖନୀ ଚଳାଇ ସବୁଥିରେ ସିଦ୍ଧହସ୍ତତା ଅର୍ଜନ କରିଛନ୍ତି । ଏଥି ସହିତ ସନ୍ନିବେଶିତ ତାଙ୍କର ଅଦ୍ୟାବଧି ପ୍ରକାଶିତ ପୁସ୍ତକ ତାଲିକା ଦେଖିଲେ ଜଣାଯିବ ଯେ ସେ ଜଣେ ଦେଶ, ଜାତି ଓ କଳାକୃଷ୍ଟିର ନିଷ୍ଠାପର ନୀରବ ସାଧକ ।

ଗୀତଗୋବିନ୍ଦର ସୁଦୀର୍ଘ ଆଲୋଚନା ସହ ଛନ୍ଦ-ସ୍ୱରାନୁସାରୀ ଉତ୍କଳାନୁବାଦ ଗ୍ରନ୍ଥ ତାଙ୍କର ଅମରକୃତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳର କଳାସଂସ୍କୃତିର ବିଶେଷତ୍ୱ ଓ ପରାକାଷ୍ଠାର ଅନ୍ୟତମ ନିଦର୍ଶନ ରୂପେ ତାଙ୍କ ପ୍ରକାଶିତ 'ଗୀତଚିତ୍ର' ପୃଥିବୀରେ ସର୍ବତ୍ର ଆଦୃତ ହୋଇପାରିଛି ।

ସ୍ୱାସ୍ଥ୍ୟଭଙ୍ଗ ହୋଇ ମଧ୍ୟ କାଳୀବାବୁ କେବଳ ରାତ୍ରି ବିଶ୍ରାମ କାଳ ଭିନ୍ନ ସର୍ବଦା ସାହିତ୍ୟ, ସଙ୍ଗୀତ କଳା ଚର୍ଚ୍ଚାରେ ଲିପ୍ତଥିବା ଦେଖାଯାଏ । ସକାଳ ୭ଟା ଠାରୁ ରାତ୍ରି ୧୦।୧୧ ପର୍ଯ୍ୟନ୍ତ ଯେ କେହି ତାଙ୍କ ନିକଟକୁ ଯାଇ ତାଙ୍କର କର୍ମମୟ ଜୀବନ ଲକ୍ଷ୍ୟକରି ପାରିବେ । ସେ ସାହାଯ୍ୟ-ଦାନ-ତତ୍ପର, ମିଷ୍ଟଭାଷୀ, ବନ୍ଧୁସ୍ନେହୀ ଏବଂ ଧର୍ମନିଷ୍ଠ ।

ସେ ସନ୍ତାନହୀନ; କିନ୍ତୁ ନିଜଗୁଣରୁ ବହୁସନ୍ତାନର ସେ ପିତାରୂପେ ଓ ପିତାମହ ରୂପେ ସମାଦୃତ, ସମ୍ମାନିତ । ଏ ସମ୍ବନ୍ଧେ ପ୍ରଶ୍ନକଲେ କାଳୀବାବୁ କହନ୍ତି, "ମୋର ସନ୍ତାନ-ସ୍ନେହ କୂପଜଳ ହେବ କାହିଁକି ? ଜଗନ୍ନାଥଙ୍କ ଅପାର କରୁଣା ବଳରୁ ମୋର ସ୍ନେହ ଅଥଳ ସମୁଦ୍ର । ମୁଁ ଏଥିଲାଗି ମୁହୂର୍ତ୍ତକ ପାଇଁ ହେଲେ ଚିନ୍ତା କରେ ନାହିଁ । ମୋ ସ୍ନେହ ସୀମାବଦ୍ଧ ବା ପାଶନିବଦ୍ଧ ହେବାଲାଗି ନୁହେଁ । ମୋର ପରମ ସୌଭାଗ୍ୟ ଯେ ମୋର ଏତେ ସନ୍ତାନ ।" ବାସ୍ତବରେ କାଳୀବାବୁ ମଧ୍ୟ ସେହିପରି ସ୍ନେହ ସମାଦର ପାଉଥିବାର ଦେଖି ତାଙ୍କର ବନ୍ଧୁମାନେ ବିସ୍ମିତ ହୁଅନ୍ତି ।

ଓଡ଼ିଶା ତାଙ୍କପରି ଏକ ଯୋଗଜନ୍ମା ପୁରୁଷର ଯଥୋଯୋଗ୍ୟ ସମ୍ମାନ ଦେଇଛି କି ନାହିଁ ତାହା ଏକ ବିଚାର୍ଯ୍ୟ ବିଷୟ । ଆମ୍ଭମାନଙ୍କ ଜାଣିବାରେ ସେ କିନ୍ତୁ ଏଥିପ୍ରତି ଭୁଲେ ମଧ୍ୟ ଅପେକ୍ଷା କରନ୍ତି ନାହିଁ, କିମ୍ବା ଦୁଃଖ କରନ୍ତି ନାହିଁ ।

ଆଜି ତାଙ୍କର ୭୩ ବର୍ଷ ବୟସରେ ମଧ୍ୟ ତାଙ୍କ ଯୁବସୁଲଭ ସରସତା ତିଳେହେଲେ ମଉଳି ନାହିଁ ।

ଜଗନ୍ନାଥ ତାଙ୍କୁ ଦୀର୍ଘାୟୁ କରନ୍ତୁ ।

—*—

# କବିଚନ୍ଦ୍ର କାଳୀଚରଣଙ୍କ ରଚିତ ଓ ୧୯୭୧ ସୁଦ୍ଧା ପ୍ରକାଶିତ ପୁସ୍ତକାବଳୀ

## ନାଟକ

୧ । ଧ୍ରୁବ
୨ । ହରିଶ୍ଚନ୍ଦ୍ର
୩ । ମୃଗୟା
୪ । ଶକୁନ୍ତଳା
୫ । ବନବିହାର
୬ । ବିଦ୍ୟାବଳୀ
୭ । ବାଂଶୀ-ବିଳାସ
୮ । କୌତୁକ ଚିନ୍ତାମଣି
୯ । କିଶୋର ଚନ୍ଦ୍ରାନନ ଚମ୍ପୂ
୧୦ । ଶ୍ରୀ ଗୀତଗୋବିନ୍ଦ
୧୧ । ପ୍ରୀତି ସୁଧାକର
୧୨ । ଲକ୍ଷ୍ମୀ
୧୩ । ଆଖିର ଦେଖା
୧୪ । ମାନିନୀ
୧୫ । ପ୍ରତିଶୋଧ
୧୬ । ଗାର୍ଲିସ୍କୁଲ
୧୭ । ଆହୂତି
୧୮ । ଚୁମ୍ବନ
୧୯ । ଖିତ
୨୦ । ପରିବର୍ତ୍ତନ
୨୧ । ଜୟଦେବ
୨୨ । ହରଣଶୂଳ
୨୩ । ଜଗନ୍ନାଥ ଦାସ
୨୪ । ଅଭିଯାନ
୨୫ । ଚକ୍ରୀ
୨୬ । ବେକାର
୨୭ । ଦଶଭୁଜା
୨୮ । ରକ୍ତମାଟି
୨୯ । ବନମାଳା
୩୦ । ଫଟାଭୂଇଁ
୩୧ । ଶାରଳାଦାସ
୩୨ । ରକ୍ତମନ୍ଦାର
୩୩ । କମଳା
୩୪ । ସ୍ୱାପ୍ନଖଣ୍ଡ
୩୫ । ସନ୍ଧାନ
୩୬ । ମାଳତୀ
୩୭ । ଯୁଗେ ଯୁଗେ ଉତ୍କଳ
୩୮ । ଭୂଇଁଖା ( ହିନ୍ଦୀ )

## କାବ୍ୟନାଟିକା

୩୯ । ଅନଙ୍ଗ

## ନୃତ୍ୟନାଟିକା

୪୦ । ସାକ୍ଷୀଗୋପାଳ
୪୧ । ମାନିନୀ
୪୨ । ଗୀତଗୋବିନ୍ଦ
୪୩ । ପଞ୍ଚପୁଷ୍ପ
୪୪ । ମାଣିକ୍ୟ
୪୫ । ଦେହି ପଦପଲ୍ଲବ ମୁଦାରମ୍
୪୬ । ଚନ୍ଦ୍ରିକା

## ଏକାଙ୍କିକା

୪୭ । ପଞ୍ଚରଙ୍ଗ
(ପାଞ୍ଚଗୋଟି ଏକାଙ୍କିକାର ସମାବେଶ)
୪୮ । ଷଡ଼ରସ
( ଛଅଗୋଟି ଏକାଙ୍କିକାର ସମାବେଶ)
୪୯ । ସପ୍ତପର୍ଣ୍ଣୀ
(ସାତଗୋଟି ଏକାଙ୍କିକାର ସମାବେଶ)
୫୦ । ଜୀବିତ-ତର୍ପଣ
୫୧ । ଯୁଗ-ପୁରୁଷ
୫୨ । ଯୁଗ-ଯୋଗୀ ( ହିନ୍ଦୀ )
୫୩ । କହାନାହିଁ (ପ୍ରୌଢ଼ଶିକ୍ଷା)
୫୪ । ଦୋଷ କେଉଁଠି (ପ୍ରୌଢ଼ଶିକ୍ଷା)